ପ୍ରକାଶକ
ଅଭିରାମ ମହାପାତ୍ର
**ଗ୍ରନ୍ଥ ମନ୍ଦିର**
କଟକ-୨ ବ୍ରହ୍ମପୁର

ଦ୍ୱିତୀୟ ସଂସ୍କରଣ
ଡିସେମ୍ବର ୧୯୬୪

ମୁଦ୍ରକ
ଜମ୍ବୁରାମ ମହାପାତ୍ର
**ଗ୍ରନ୍ଥ ପ୍ରକାଶିନୀ**
କଟକ-୧

ମୂଲ୍ୟ
ସାଦାବନ୍ଧେଇ ଟ ୨.୫୦
ବୋର୍ଡବନ୍ଧେଇ ଟ ୩.୫୦

# ତୃତୀୟ ମୁଦ୍ରଣର ଭୂମିକା

"ପଲ୍ଲିଶ୍ରୀ" ପୁସ୍ତକାକାରରେ ପ୍ରଥମେ ପ୍ରକାଶ ପାଏ ୧୯୪୧ ସାଲରେ । ତତ୍ପରେ ଏହାର ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହୁଏ ୧୯୪୯ ସାଲରେ ।

ଏ ବହିଟି କେତେକ ବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟର ଏମ୍. ଏ. କ୍ଲାସରେ ପାଠ୍ୟରୂପେ ମଧ୍ୟ ପ୍ରଚଳିତ ଥିଲା । ବର୍ତ୍ତମାନ ପୁଣି ବହିଟି ପାଠ୍ୟ ଅଛି କି ନାହିଁ ଜାଣେ ନାହିଁ । ବଜାରେ କିନ୍ତୁ ଗଲା କେତେ ବର୍ଷ ଧରି ଏ ବହିଟି ମିଳୁନାହିଁ, ଏ ଅଭିଯୋଗ କ୍ରମାଗତ ଶୁଣି ଆସୁଚି ।

ବର୍ତ୍ତମାନ କଟକର 'ଗ୍ରନ୍ଥ ମନ୍ଦିର'ଙ୍କ ଆନୁକୂଲ୍ୟରେ ଏ ପୁସ୍ତକର ଶୋଭନ ତୃତୀୟ ସଂସ୍କରଣ ପ୍ରକାଶ ପାଉଛି । ଏହା ଲେଖକ ପକ୍ଷରେ ନିଶ୍ଚୟ ଆନନ୍ଦର କଥା । କାରଣ ବହି ବିକ୍ରୀ ହେଉ ବା ନ ହେଉ, ଲେଖକ ତାର ପ୍ରାପ୍ୟ ପାରିଶ୍ରମିକ ପାଉ ବା ତାହା ବୁଡ଼ି ଯାଉ, ନିଜ କୃତିତ୍ୱର ଏକ ଶୋଭନ ପରିଚ୍ଛନ୍ନ ରୂପ ଦେଖିବାର ଲୋଭ କୌଣସି ସ୍ରଷ୍ଟା ନିଶ୍ଚୟ ସମ୍ବରଣ କରି ପାରି ନ ଥାଏ । ଏଟା ସାହିତ୍ୟିକର ହୁଏତ ଏକ ଦୁର୍ବଳତା ।

ଓଡ଼ିଆ ସାହିତ୍ୟର ବିକାଶ ଆଜି ନାନା ଦିଗରୁ ପ୍ରତିହତ ଓ ବିଡ଼ମ୍ବିତ । ଏହି ବିଘ୍ନଗୁଡ଼ିକୁ ବିଶ୍ଳେଷଣ କଲେ ଜଣାଯିବ ଯେ ଦେଶର ଗ୍ରାହକମାନଙ୍କର ଉଦାସୀନତାହିଁ ସାହିତ୍ୟର ସ୍ୱନିର୍ଭରଶୀଳ ଓ କେନ୍ଦ୍ରମୁଖୀ ହେବା ପଥରେ ପ୍ରଧାନ ଅନ୍ତରାୟ । ସାହିତ୍ୟ ଆଜି ପରମୁଖାପେକ୍ଷୀ ଓ ପରାନ୍ନଭୋଜୀ । ସାହିତ୍ୟର ଏ ଅସହାୟତା ଓ ଦାରିଦ୍ର୍ୟର ଗ୍ଲାନି କେବଳ ଦୂର କରି ପାରିବେ ଦେଶର ଗ୍ରାହକ ଗ୍ରାହିକାମାନେ ସେମାନଙ୍କର ସକ୍ରିୟ ସହଯୋଗ ଦ୍ୱାରା । କେବଳ ମୌଖିକ ସହାନୁଭୂତି ଏ କ୍ଷେତ୍ରରେ ଯଥେଷ୍ଟ ନୁହେଁ ।

ମୋର ଆଶା, ପଲ୍ଲିଶ୍ରୀର ଏ ନୂତନ ସଂସ୍କରଣ ଗ୍ରାହକ ତଥା ସାହିତ୍ୟ-ରସିକମାନଙ୍କ ଦରବାରରେ ଆଦୃତ ହେବ । ଇତି ।

ସଚ୍ଚିଦାନନ୍ଦ ରାଉତରାୟ

ମେରିଆ ବଜାର
କଟକ—୧
ତା ୨୫ । ୧୧ । ୧୯୬୪

# ଉତ୍ସର୍ଗ

୰ ମାମା,

ଓଡ଼ିଆ ପଲ୍ଲୀର ସକରୁଣ ବ୍ୟକ୍ତିତ୍ୱ ତୋର ଭିତରେ ହିଁ ମୋର ତରୁଣ ଆଖି ଆଗରେ ପୂର୍ଣ୍ଣରୂପେ ଧରାଦେଇଯାଇଚି, ଆଉ ମୁଇଁ ହେଉଚି ବୋଧହୁଏ ପଲ୍ଲୀମାଳିନୀ ଓଡ଼ିଶାକୁ ତୋର କରୁଣାଂତକ ଜୀବନର ସର୍ବଶ୍ରେଷ୍ଠ ଦାନ ।

"ପଲ୍ଲୀ-ଶ୍ରୀ" ତୋର ପୁଣ୍ୟସ୍ମୃତି ଉଦ୍ଦେଶ୍ୟରେ ଉତ୍ସର୍ଗ କଲି ।

କଟକ
୧୫-୧୨-୧୯୪୧

ତୋର
'ବୁଢ଼ା'

# ପ୍ରଥମ ମୁଦ୍ରଣର ଭୂମିକା

'ପଲ୍ଲୀ-ଶ୍ରୀ' ଓଡ଼ିଶାର ପଲ୍ଲୀ-ଜୀବନର ସୌନ୍ଦର୍ଯ୍ୟ, ସ୍ୱବୋଧ ଓ ବ୍ୟକ୍ତିତ୍ୱବୋଧକୁ ନେଇ ରଚିତ କେତେକ ଖଣ୍ଡକବିତାର ଏକତ୍ରୀକରଣି ମାତ୍ର । କବିତାଗୁଡ଼ିକ ବିଭିନ୍ନ ସମୟରେ ଓ ବିଭିନ୍ନ ବିଷୟ-ବସ୍ତୁକୁ ନେଇ ରଚିତ ହୋଇଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ଥିବା ଭାବ ଓ ଉପଲକ୍ଷ୍ୟଗତ ସାମଞ୍ଜସ୍ୟ ହିଁ ସେମାନଙ୍କୁ ଏକ ପୁସ୍ତକର ଅନ୍ତର୍ଗତ ହେବା ପାଇଁ ବାଧ୍ୟ କରିଛି । ତଳେ କବିତାଗୁଡ଼ିକର ରଚନା-କାଳର ସମୟାନୁକ୍ରମିକ ସୂଚୀ ଦିଆଗଲା ।

ଶିବପୂଜା—୧୯୩୨ ସାଲ, ପହିଲି ରଜ—୧୯୩୪ ସାଲ, ପଲ୍ଲୀ-ପ୍ରଭାତ—୧୯୩୪ ସାଲ, ଜମିଦାରଙ୍କ ଷଣ୍ଢ—୧୯୩୫ ସାଲ, ମାଲୁଣୀ ୧୯୩୬ ସାଲ, ରେଙ୍ଗୁନ ଯାତ୍ରୀ—୧୯୩୭ ସାଲ, ଶ୍ରେଷ୍ଠ ମୋର ଗାଆଁଟି—୧୯୪୧ ସାଲ, ପଲ୍ଲୀସଂଜ—୧୯୪୧ ସାଲ, ବାପା ବାପା ପକାଇଲା ଦୂର—୧୯୪୧ ସାଲ, ଗ୍ରାମ-ଶ୍ମଶାନ—୧୯୪୧ ସାଲ । (ମୁଁ ତ ଭିଅ ନାହାକ ଝିଅ—୧୯୫୮ ସାଲ, ଗ୍ରାମସଭା—୧୯୫୮ ସାଲ, ଗାନ୍ଧିଗୋଲ—୧୯୫୮ ସାଲ । ଶେଷୋକ୍ତ ତିନୋଟି କବିତା ପରବର୍ତ୍ତୀ ସଂସ୍କରଣରେ ଯୋଗ କରାଯାଇଛି । )

ଏ ପୁସ୍ତକର ପ୍ରକାଶନ ଭାର ମୋର ବନ୍ଧୁ ନରଣଗଡ଼ର ଶ୍ରୀ ଶରତଚନ୍ଦ୍ର ନରେନ୍ଦ୍ର ସିଂହ ବହନ କରିଥିବାରୁ ମୁଁ ତାଙ୍କଠାରେ ଚିରକୃତଜ୍ଞ । 'ପଲ୍ଲୀ-ଶ୍ରୀ'ର ପ୍ରଚ୍ଛଦପଟ ଓ ଭିତରର ଦ୍ୱିରଙ୍ଗ ଚିତ୍ରଟି ତରୁଣ ରୂପଦକ୍ଷ ଓ ମୋର ବନ୍ଧୁ ଶ୍ରୀ ରଘୁନାଥ ଶ୍ରେଷ୍ଠରାୟ ଅଙ୍କନ କରିଛନ୍ତି, ଆଉ ଏ ପୁସ୍ତକ ପ୍ରକାଶରେ ଯଥେଷ୍ଟ ସାହାଯ୍ୟ କରିଛନ୍ତି । ତାଙ୍କର ଏ ଉଦାର ସହଯୋଗ ବ୍ୟତୀତ 'ପଲ୍ଲୀ-ଶ୍ରୀ'ର ପ୍ରକାଶ ସୁଦୂରପରାହତ ହୋଇଥାନ୍ତା । ଏଥିପାଇଁ ସେ ମୋର ଅଶେଷ ଧନ୍ୟବାଦର ପାତ୍ର ।

ଏ ପୁସ୍ତକଟି ପଢ଼ି ଦେଶର ଜନସାଧାରଣ ଆନନ୍ଦ ପାଇଲେ କିମ୍ବା ସେମାନଙ୍କର ମତାମତ ମତେ ତଳ ଠିକଣାରେ ଜଣାଇଲେ ମୁଁ ଅଧିକତର ସୁଖୀ ହେବି ଓ ଗଣସାହିତ୍ୟ ରଚନାରେ ମୋର ପ୍ରୟାସ ଓ ପରୀକ୍ଷା ଅଧିକତର ଉପଯୁକ୍ତ ହେବ ।

ରାଣୀହାଟ—ପୋ: ଅ: କଟକ
୧୫-୧୨-୧୯୪୧
} ସଚ୍ଚିଦାନନ୍ଦ ରାଉତରାୟ

# ସୂଚୀପତ୍ର





# ଛୋଟ ମୋର ଗାଆଁଟି

ଶ୍ରେଷ୍ଠ ମୋର ଗାଆଁଟି
ଭୂଗୋଳ ପୋଥି ପତରେ ପଛେ ନ ଥାଉ ତାର ନାଆଁଟି ।।

ମାଟିର ସେଇ ସରଗ ମୋର,
ସେଇଠି ଅଛୁ ମୋ ଷଠୀଘର ।
ଜଳିବ ପୁଣି ସେଇଠି ଶେଷେ
ମୋହର ଚତା ନଆଁଟି !!
ଶ୍ରେଷ୍ଠ ମୋର ଗାଆଁଟି !!

ଜନମି ତାର ଏଂତୁଡ଼ିଶାଳେ
ବୁଲ୍‌ଚି କେତେ ତା ତୋଟାମାଳେ ।
ପାଂଚଟି ମୋର ପଂଜରା କାଠି,
(ଶେଷେ) ସେଇଠି ହେବ ତାହାଟି ।।
ଶ୍ରେଷ୍ଠ ମୋର ଗାଆଁଟି !!

ତାହାର ଜଳ ରକତ ହୋଇ
ଶିରାରେ ବହେ ଯେସନ ନଈ,
ନିଃଶ୍ୱାସେ ମୋ ତାହାର ବାୟୁ
ଚଳାଏ ପ୍ରାଣ-ନାହାଟି ।।
ଶ୍ରେଷ୍ଠ ମୋର ଗାଆଁଟି !!

ତାହାର ଫୁଲ, ଶାଗୁଆ ଲତା
କଂଠେ ମୋର ଦେଲା ଯେ କଥା,
ଆଖିରେ ଦେଲା ଗୃହାଣି ନୂଆ
(ତାର) ଫଗୁଣ ଉଷା ପାହାଂନ୍ତ ॥
ଶ୍ରେଷ୍ଠ ମୋର ଗାଆଁଟି !!

ଝରଣା ତା'ର କଲା ଯେ କବ,
ନୟନେ ଦେଲା ରୂପର ଛବ,
ବୁହାଇଦେଲା ସପନ ଢେଉ
ପଥର ବୁକେ ନିହାନ୍ତ ॥
ଶ୍ରେଷ୍ଠ ମୋର ଗାଆଁଟି !!

ତାହାର ଲଟା, ତାହାର ବଣ,
ତା' ଗାଈଗୋଠ ମୁରଲୀ-ସ୍ୱନ,
ଫସଲକଟା ମଧୁର ଗାନ
ସକଳ ମୋର ସାହାନ୍ତି ॥
ଶ୍ରେଷ୍ଠ ମୋର ଗାଆଁଟି !!

ଆଲୁଅ ତା'ର କି ମନୋହର !
ଅଂଧକାର ତା'ଠାରୁ ଭଲ,
ଜୀବନ ପଥେ ସକଳ ତା'ର
ଫିଟାଏ ନୂଆ ଗୃହାନ୍ତି ॥
ଶ୍ରେଷ୍ଠ ମୋର ଗାଆଁଟି !!

ଦୁନିଆ କଣେ ଗ୍ରାମଖଂଡେ ଥାନ,
ଅତି ସେ ଶ୍ରେଷ୍ଠ, ନିହାତ ସାନ,
ତଥାପି ଭାଲେ ଛବିଟି ଦୁଃଖୁଁ
ଥରେ ମୁଁ ତାର ଗୃହାଂନ୍ତ ॥
ଶ୍ରେଷ୍ଠ ମୋର ଗାଆଁଟି !!

ଖୁଦ୍ରର ତୀର ଉଦରତଳେ
କେତେ ଯେ ରଥୀ ଜନମ ନେଲେ ।
(କେତେ) ନାଉଁଆ ଲୋକେ ଅଇଲେ ଗଲେ
ଆଜ ସେ ସବୁ କାହାଁନ୍ତି ?
ଶ୍ରେଷ୍ଠ ମୋର ଗାଆଁଟି !!

ପେଟରେ ପେଟେ ମାମଲା ବୁଦ୍ଧି
ଜନମିଥିଲେ ହରି ସୁବୁଦ୍ଧି,
ସାଥିକୁ ତାଂକ ଗୋଦର ଗୋଡ଼
ମଂତ୍ରୀ ଛନ୍ତି ମହାଁନ୍ତ ॥
ଶ୍ରେଷ୍ଠ ମୋର ଗାଆଁଟି !!

ଖଂଡିଆ କାଂଥ ଗାଆଁଟା ହେଲା
ଡିହରେ ନାଚେ ବାଲୁଆ ପିଲା,
ଉଚ୍ଛନ୍ନ ହେଲେ, ଆସାମ ଗଲେ
ଘରେ ତ ଗୃହୀ ନାହାଁନ୍ତି ॥
ଶ୍ରେଷ୍ଠ ମୋର ଗାଆଁଟି !!

ପ୍ରତାପଶାଳୀ ସାମଂତରାୟ
ଗାଁରେ କଲେ ଏମଂତ ରାୟ;
ଦେଏଣା ଭାରେ ସକଳେ ହାୟ
ରେଂଗୁନ୍ ଭୂଇଁ ଧାଆଁନ୍ତି ॥
ଶ୍ରେଷ୍ଠ ମୋର ଗାଆଁଟି !!

ଗାଁରେ ଥିଲେ କପିଲ ନଂଦେ
ଗୃଲଲେ ଭୂଇଁ ଲସେ ଯେ ଖଂଦେ ।
ସବୁ କଥାରେ ମୁରବ ସାଜ
ହଲଉଥିବେ ବାହାଟି ॥
ଶ୍ରେଷ୍ଠ ମୋର ଗାଆଁଟି !!

ସରବାକାର ଅଗାଧୁ ଷଂଢ
ଗାଧୋଇ ସାଉ ଦ୍ୱଅଂଢ ଦଂଢ
ପୋଷିଲେ ଜଣେ, ଶୋଷଂଢ ପଣେ
କଲମ-କାଠି ଛୁଆଂଢ ॥
ଶ୍ରେଷ୍ଠ ମୋର ଗାଆଁଟି !!

ଚଉକଦାର ଗୋବରା ଷୋଇ
ଚଲମ ଟାଣି ଗ୍ରଢଙ୍ଗା ଶୋଇ
ସକାଳୁ କହେ "ବୁଲାଇଦେଲ
ଗ୍ରେରକୁ କାଲ ଭୂଆଁଟି ॥"
ଶ୍ରେଷ୍ଠ ମୋର ଗାଆଁଟି !!

ଆବର ଥିଲା ଜଟିଆ ବୁଢ଼ୀ
ପିଲାଠୁ ବଡ଼ ସବୁର ଖୁଡ଼ୀ,
କା' ଘରେ କେତେ ମୂଷାର' ଗାଡ଼,
ସବୁ ତା ଜଭେ ଥୁଆଟି ॥
ଶ୍ରେଷ୍ଠ ମୋର ଗାଆଁଟି !!

ମୁହଁଟା ତାର କାଉରୁ ଦାଢ଼,
ପଣତ କାନ ଛୁଆଁଇ ବାଢ଼,
ଲଗାଇ କଳ, ଝୁଣିବ ହାଡ଼,
ଡାକବ କେତେ କୁହାଟି ॥
ଶ୍ରେଷ୍ଠ ମୋର ଗାଆଁଟି !!

ଗାଁର ପୁଣି ବାଗୁଡ଼ି ଖେଳେ
କେଳୁଆ, ନଧି, ଅଇଁଠା ମେଳେ
କେତେ କେ ଜୀଏ, କେତେ କେ ମରେ,
ମରେନା ଖାଲି କାଆଟି ॥
ଶ୍ରେଷ୍ଠ ମୋର ଗାଆଁଟି !!

ଗାଁର ଶେଷେ ଏକଣା ଘରେ
ବଉଳ ଫୁଲ୍ ଯେଉଁଠି ଝରେ,
ଥିଲା ଯେ ପୁଣି ବାଧବା ଏକ
ବାଳୁତ ତାର ଛୁଆଟି ॥
ଶ୍ରେଷ୍ଠ ମୋର ଗାଆଁଟି !!

ହବିଷ ଖାଇ ଚଉରା ମୂଳେ
ନନ୍ଦ ସେ ଆସି ପ୍ରଣବ୍ଧ ଢାଳେ,
ଆକାଶଦୀପ ହୋଇ ଯେ ଜଳେ
ଖେଳକଲା ତାର 'ସାହା'ଟି ॥
ଶ୍ରେଷ୍ଠ ମୋର ଗାଆଁଟି !!

ଏସବୁ କଥା ଛବିଟି ପରି
ପ୍ରବାସେ ମନେ ଉଠଇ ଝଲି ।
ଇଚ୍ଛା ହୁଏ ମାଟିରେ ତାର
ଶିରଟି ଥରେ ନୁଆଂଇ ॥
ଶ୍ରେଷ୍ଠ ମୋର ଗାଆଁଟି !!



# ପଲ୍ଲୀ-ସକାଳ

## ପ୍ରଥମ ଦୃଶ୍ୟ

ଜାଂଗୁଲ୍ ଜାଂଗୁଲ୍ ରାତି ନ ପାହୁଣୁ ଫସର ଫାଟି
ବାଡ଼ି ଆଂବଗଛ ଦୂର ଗହଳରୁ ଶୁଭିଲା ପାଟି—
"ଆଲୋ ଏ ବଉଳ, ଫେଇବ ନାହିଁ କି କବାଟ ଆଜି ?
କାଉ ରାବିଲାଣି, ଅଳସ ପହଡ଼ ନାଂଇଁ କି ଭାଜି ?
ଉଛୁର ହେଲାଣି ଗାଧୋଇଯିବ ତ ଆସ ଲୋ ବେଗେ
କେତେ କାମ ଘରେ, ଆସୁଥାଆ ପଛେ, ଯାଉଚି ଆଗେ ।।"

"ଏତେ ତରତର ସଖୀଲୋ କିଆଁ ମ ପଡ଼ିଚି ତୋର
ଦିନକର ବେଳ ଅଛି ତ ଆହୁରି ମଲି ମୋହର !
ଆଲୋ ଏ କନକ, ଆଣିବୁଟି ଟିକେ ମଥାଇ ଆଗ,
ହଳଦୀ କାଠୁଆ ଥାଉ ଆଜି ପଛେ, ନଅଁଣି ପାଗ !
ତୁହାଁ ଏ କୁହୁଡ଼ି କେତେ ଘନ ହୋଇ ଆସୁଚି ମାଡ଼ି,
ବଉଳଟି ମୋର ଠିଆହୁଅ ଟିକେ ଯାଆ ନା ଛାଡ଼ି ।।"

## ଦ୍ୱିତୀୟ ଦୃଶ୍ୟ

"ଆଲୋ ରଡ଼ି ନଅାଁ ଆସୁ ନାହିଁ ନାଆଁ ସରଗ ତରା
ଉଠିବୁ ନାହିଁକି ହୋଇଲାଣି ବେଳ ପହରେ ପରା !
ତୋହର ସାଥିର ହାର, ଚେମୀ, ଟଭି ସକାଳୁ ଉଠି
ଗାଡ଼ଧୋଇ ପାଡ଼ଧୋଇ ଆସିଲେଣି ପରା ସବୁ ଏକାଠି

ଏତେବେଳଯାଏ    ଗହ୍ମ ନଦ ତୋ    ଭାଜିଲା ନାହିଁ
କେଉଁ ଭୂଆସୁଣୀ    ଏତେବେଳ ଯାଏ    ଶୋଇଚ କାହିଁ ?
ବାସି-ପଖ଼ାଳ ତୋର    ଏତେବେଳଯାଏ    ନ ହେଲା ଠେକା
ଛୁଂଚମୁନେ ଗଢ଼ା    ଜୀବନ ଏ ପଖ଼ା    ନ ଥିଲା ଦେଖା ॥

କାହା ଘରେ କଏ    ଉଠି ନାହିଁ ଏବେ    କହିଲୁ ଭଲା
କେଉଁ ବର ତୋତେ    ନବ ଲୋ ମାଣିକ    ମୁକୁତା-ଝରା !
ଭାଂଗିବାକୁ ନିତି    ପହଡ଼ ତୋହର    ଖଂଜିବ କଏ
ଦାସୀ ଦୁଇଗୋଟା    ସାଧବଝିଅ ତୁ    ଉଠମ ଯାଏ ॥

ବକ ବକ କଏ    ନିତି ଏହା ସାଥେ    ହୋଇବ ମୋର
ପଡ଼ଶା ହସିବେ    ସାବତ ବୋଲି ମା    ମାଡ଼ୁଚି ଡର ।
ନାଆଁରେ ମୋହର    ବଜାର ଦାଂଡରେ    ବସିବ ହାଟ
ନିତି ମୋ ଲଗିଚି    ଘରେ ସଦା ସେଇ    କେଲୁଣୀ ନାଟ ॥

ଆସୁ ତୋର ବାପ    କହିବ ତାହାକୁ    ନାହିଁ ମୋ ଲୋଡ଼ା
ପଠାଇ ଦିଅଂତୁ    ଝିଅଂକୁ ତାଂକର    ଚଢ଼ାଇ ଘୋଡ଼ା ।
କେଉଁ ରଜାଘରେ    ଦେବେ ଲୋ କେଜାଣି ?    ଛତରଖାଇ
ଜାଣିବ କମିତି    ମାଟି କୁଡ଼ିଆରେ    ନିତି ମୁଁ ଥାଇ ॥"

ତୃତୀୟ ଦୃଶ୍ୟ

ପୁଣି କାହା ଘରେ    ଶୁଭେ ଶାଶୁ ବୁଢ଼ୀ    ପ୍ରଖର ରୁଂଜ
"ଆଲୋ ସାନବୋହୂ    କହିବାକୁ ଡର,    ଛୁଡ଼ିବ ମୁଂଜ
କାହା ଘରେ କଏ    ଏତେବେଳେ ବସି    ଗୁଂଥୁଚି ଫୁଲ
ଆସୁ ଆଜ ନଂଡା    କହିବ ତାହାକୁ    ମୂଳରୁ ଚୂଳ ॥

ପୁଅ ସିନା କଲା    ତିନ ପାସ ମୋର    କଲେଜ ପଢ଼ି
ବୋହୂ ସାହାବାଣୀ    ହେବ କି ସେଲଗି    ଥିଲି ମୁ ଲୋଡ଼ି ?
କରସ୍ତାନୀ ପାଠ    ପଢ଼ି ବୋହୂଝିଏ    ହେଲେଣି କସ
କଳିକାଳ ହେଲା,    ତିଆର କହିଲେ    ନାଗୁଚି ବିଷ ॥

ସକାଳୁ ଉଠି ତ ଫୁଲଡାଲା ଧରି କାଟିବ ବେଳ
ମାଗିଖାଇ ମୁଇ ପାଇନି କରିବ, କହିଲେ ଭେଲ ।
ଖାଇସାରି ପୁଣି ଖଟରେ ବସିବ ରୁମାଲ ବୁଣି
ବାର ଘର-ଧଂଦା କରିବ କେ ଶୁଣେ ତମରି ପୁଣି ?

ସଂଜ ହୋଇଲାବୁ ହାରମନ ଧରି ଗାଇବ ଗୀତ
ପୋଇଲ ପରି ମୁଁ ଖଟୁଥିବ ଖାଲି ନଗାଡ଼ି ପିଉ ।
ଆପୁ ଆଜି ପୁଅ କହିବ; ଦେଲି ମୁଁ କାନରେ ଗଂଠି
କହିବ ତାହାକୁ ସବୁ କଥା ଆଜି ମୂଳରୁ ମାଠି ॥

ନୋହିଲେ ଜାଣିବ ଆଜିଠାରୁ ମୁହିଁ ତମରି ଝିଅ,
ଭଲ ଲଗେ ନାହିଁ ଉଖାରିହବାକୁ କାନରୁ ଖିଅ
ବାରଲୋକେ ସିନା ହସିବେ ନକଟି ହଲାଇ ମୁହଁ
ନ ଥାଏ ତ ମୁହିଁ କାହାରି କଥାରେ ଉଗାରିପୁଅ—

କଥାଁ ମୋ କଥାରେ ଥେଇ ଥେଇ ନାଚ ମାରିବେ ତାଳି
ହାବୁଡ଼େ ପଡ଼ିଲେ ଦାଅଂଠ ତାଂକରି ଗାଲରେ କାଳି
ନାଆଁ ଲଗାଂକରି ଥାଏ ନା କି ଆଉ ବେଉସା କିଛି
ପରି ଘରେ କେତେ ମୂଷାଗାଡ଼ି ଅଛି ଖୋଜଂତ ଛି-ଛି !!

ବୋହୂକୁ ମୋହର ଭଲରେ ମଂଦରେ ଆକଟି ପଦେ
କହିଲି ଯେବେ ମୁଁ ଗାଡପଶାଂକରି ସାହାଣେ ବାଧେ ।
ମୋ ବୋହୂ ମୋହର ଯାଉଚ କି ମୁହିଁ ଗୁହାରି କରି ?
ମୋ ବୋହୂର ନଖ ପାଣିକୁ ଯେଗୁଡ଼ା ହେବେ କି ସରି ?

ବୋହୂ ଶୀରି ଦେଖି ହଂସାରେ ସବୁରି ମରମ ଜଳେ
ଯାଏ ମୁଁ ଗାଧୋଇ ହୋଇଲାଣି ଗୁଇ ପାଚଗ୍ଧ ତଳେ !
ଘର ସୁନା ଯେବେ ଅଂଟିରି ହୁଅଂତା କଥାଁ ଲୋ ତେବେ
ବାର ଲୋକେ ମୋତେ ଉଖାରି କହଂତେ ବଚନ କେବେ ?

ମଲ୍ଲ ରେ, ଦେଖ ମ ଭୁଆ ବଲେଇଟା ପିଏ ଓଖର
ଉଡ଼ିଦବା ପାଇ ଦଣୁନ କାହାକୁ; କଏ ମ ମୋର !
ଏତେ ଆଉ ହବ ମଲିଣି ମୁଁ ଏଠି ହେଇ ଯେ ଘାଂଟି,
କଥାଟି ଦଣିବ କହବ ଯେବେ ମୁ ଫିଟାଇ ପାଟି !!

ଆଣିବୁଟି ଆଲୋ, ପାଲୁଣୀ ଟିକାଏ ଗୋବର ଜଲ,
ଗୁରୁବାରଟାରେ ନ ବୁଲିଲା କନା ଅଗଣା ତଲ ।
ଧାନ ଅମାରରେ ହେଲା ନାଇଁ ଦଆ ମୁରୁକ ଚଡା,
କଥାଗୁର ମୋର ସଭିଂକ ନାଗୁଚ ପଗ ଲୋ ପିଡା ॥

ପାରବ ନାଇଁ ମୁଁ ରହ୍ ଆଉ ଏଠି କହୁଚି ସତ,
ପଠାଇ ଦଅଂତୁ ପୁଗ୍ନିକୁ ନୋହୁଲେ ଏହ୍ ମାସଂତ ।
ନୋହଲେ ଯାଉଚି ବାପଘର ମୁହଁ ଅଚ୍ଛ ମୋ ଭାଇ,
ଗୋଟାଏ କାହ୍ କ ଦଣୁଟା ପୋଷିବ, ଉର କପାଇ ?
ବୁଝଂତୁ ସେ ତାଂକ ଘର କଥା, ଅବା ଉକୁଡ଼ି ଯାଉ,
ଦହ ସହେ ନାଇ ବୋଲ୍ ସିନା କହେ, ନ ହେଲା ଥାଉ ॥" ✻



✻ ୧୩୪୦ ସାଲ୍ ବୈଶାଖ ସଂଖ୍ୟା 'ସହକାର'ରେ 'ପ୍ରଭାତ ଆଗମେ' ନାମରେ ଏହା ପ୍ରଥମେ ପ୍ରକାଶ ପାଇଥିଲା ।

# ପଲ୍ଲୀ-ସଂଜ

—୧—

କାକର-ହକଲା ବଣ, ବୁଦା ଶିରେ        କପୋତ ବାହୁନ ଗାଇଲା
"ଦିନ ରତରତ ବେଲ ହେଲା ଗତ        ସାଥି ଯେ ବାହୁଡ଼ି ନଇଲା ।
ମାଣ ନ ପୂରିଲା ମୋହର ।"
ଶିଉଳି-ସାଉଁଳା ପାଣି ତୁଠେ ଏଣେ        ଗରାଟି ନ ବୁଡ଼େ ସହଳ ।
ମନ ହୁଏ ଅତି ଉଛନ୍ନ
କହିଦେବ କଏ ଅଛନ୍ତି କି କୁଶଳେ        ପରବାସୀ ପ୍ରିୟ ସ୍ୱଜନ ॥

—୨—

ପଣତ ଉଡ଼ାଳେ ସଂଜ ଧରି କେ ବା        ପ୍ରିୟ କଇଲାଣ ମନାସି
ଝିଂକା ଅଗଣାରେ ତୁଳସୀ ତଳରେ        ଶିରଟି ଯତନେ ବିନ୍ୟାସି,
ସଳତାଟି ରଖେ ତା ମୂଳେ ;
ଗ୍ରାମଦେବତାଙ୍କ ଭଂଗା ଦେଉଳର        ମେଘଛୁଆଁ ଚୂଡ଼ା ତ୍ରିଶୂଳେ
ଝରିପଡ଼େ ଘନ କୁହୁଡ଼ି ।
ଉପରେ ଜଳଇ ଚନ୍ଦ୍ରର ରୋଶନି,        ଶତ ତାରକାର ଦିହୁଡ଼ି ॥

—୩—

ଗୋଠରୁ ବାହୁଡ଼ି ଅଇଲେଣି ଧେନୁ        ଶୁଣାଯାଏ ଘଂଟିଘାଗୁଡ଼ି
ଧୂଡ଼ୁକା ବଜାଇ ପଛେ ଗୋପ-ଶିଶୁ        ଆସେ କାଖେ ଜାକି ଲଗୁଡ଼ି ।

'ଭଦଭଦଳିଆ' ଛତାରେ
ଜହ୍ନିଫୁଲ ଫୁଟି ହସେ ଠୋଅଠାଆ    ନୂଆଣିଆ ଚାଳ ବତାରେ ।
ଭାଗବତ ଘରେ ଖଂଜଣି
ଶୁଣାଯାଏ ଦୂରୁ, ଶୁଭଇ ଭଜନ,    ଭୀମା ଭୋଇ ଗୀତେ କି ଭଣି ?

—୪—

ନାଇ କୁଂଭୀପଟ ଅଲେଖ ଗୋସେଇଁ    ପୂଜାସାର ଶେଷ ରବରେ
ଗାଉଛଂତି ଗୀତ ପୁଲକାଇ ଚିତ୍ତ    ନମ ନମ ଭୀମ କବରେ ।
କୁହୁଡ଼ିଆ ସଂଜ ଶୀତର,
ପୋଉଁଚଂତି ନିଆଁ ଉମେଦ୍ଧତି ଜାଳି    ଘରେ ଘରେ ହିମ-କାତର ।
ଲାଗେ ଧାନକଟା ଚହଳ,
କଲେଇ ଶଗଡ଼ ଧରି ଫେରିଲେଣି    ଉଜେଇଁ ସୁନାର ଫସଲ ॥

—୫—

ଗାଁ ଶେଷେ ଗୃହାଁ । ଧୋବଲି ସାହୁର    ଦୋକାନେ ଲାଗିଛି ଗହଳ
ବୋଡ଼ିକର କିଏ ମାଗେ ମଥାଦହ୍ନ    ସଜାଡ଼ିବ ଚୂନା କୁଂତଳ ।
ହରଗଉରୀ କା ନଖରେ,
ସଉଦା ସାରି କେ ଫେରଇ ଅଳସେ    ପାଛିଆଟି ଧରି କାଖରେ ।
ଧୂଆଁ ଉଠେ ଚାଳ ଉପରେ,
ଲାଗିଲଣି ଚୁଲି କାନସିରି ଦେଇ    ଚଲାଇନଏ କେ ପଖାଳେ ॥

—୬—

ଆଖଡ଼ା ଘରରେ ଶୁଭେ ରେରେକାର    ଡାକେ ମେଘନାଦ କୁମର
"ଆରେ ରେ ବାନର ନାଗଫାଶେ ମୋର    ନାଶ ଯିବୁ ତୁହ୍ନ ଏଥର ।"
ଗାଏ କେ ରସିକ ନାଗର
"କୁମୁଦେନୀ ଧନୀ କେଡ଼େ ସୁନ୍ଦେରୀ    ଫୁଟିଛି ବକୁଳ, ଟଗର
ପାଶେ ନାହିଁ ନବ ଯୌବନୀ ।"
(ଆହା ମୋ କେତକୀବରନୀ ! ) •
ନାଚେ ପୁଣି ଗାଏ, ଗାଏ ପୁଣି ନାଚେ    ଦୁମୁଦୁମୁ ଥରେ ଅବନୀ ॥

—୭—

ମାଁ ଶେଷେ ତେଣେ କେ ଆସେ ବଦେଶୀ     କୁଣିଆ ପଡ଼ିବେ କା ଘର।
ଗୁଗୁଚିଆ ତଳେ ଲୁଗା ଟେକ ଗୋଡ଼୍‌ରୁ     ଗ୍ଲୁଚ୍ଛନ୍ତ ଧୀର ମନ୍ଥର
"ପଗୃର ଗୋ ତାଂକୁ ପଗୃର
ଭେଟିଲେ କ ଯ୍ୱାଂକୁ ଯାଉଥିଲେ ଇଏ     କରିବାକୁ ପଗ ବଜାର।
'ମଲ୍ଲଗୁଣି' ପାର ହେବେଣି ?
ଘୋଟି ଆସେ ମେଘ, 'ତଂଟିକଟା'   ତେଇଁ ସଡ଼କ କ ଧର ଯିବେଣି ?"

—୮—

ଝଂକା ମାହାଲର ଗହଳ କେନାରେ     ମହୁମାଛି ସଭା ବସିଲା,
ଅଁଲା ଗଛର କଅଁଳା ପତରେ     ଫୁଲଖିଆ ନାହିଁ ହସିଲା।
ପଳାସର ନାଲ ଓଠରେ,
ଦୁଷ୍ଟପ୍ରା ଜହ୍ନର ଆଡ଼ହସ ଅବା     ବୁଣିଗଲା ଅଧ ମଠରେ।
କୋରହୁଁ କଲା କ କୁହୁକ,
ଧୀରେ ଉଡ଼ିଗଲା କାଇଂଚ ଲତାରୁ     ଦଗାଦିଆ ଫକା ଡାହୁକ ॥

—୯—

ଦୂରେ ଗିଲ ଗଛ ଶାଗୁଆ ନଟିରେ     ନୂତନ ପୁଆର ମହକ,
କଂଟାଫିରକର ଧନୁଶର ଯୋଖା     ତେଇଁ ଅବା କୋଶ ଶହକ
ଭେଦିବ ଉଦିଆ ଜହ୍ନରେ !
ବାରମାସି ତାର ବରଗ୍ଧ ପକାଇ     ରଖିଲାଣି ଘନ ଘନ ରେ
ବାଘନଖୀ ଶାଣ ନଖରେ
ଖ୍ରାରୁ ଘାସ ଫୁଲ ଉରୁ ହୁଏ ଚର     ଗାଲେ କଟା ଗାର ଦେଖ ରେ ॥

—୧୦—

ରଂଗ ମାଣିକର ନାଲ ତନୁ ଚୁମି     ଶୋଣିତ କାଢ଼ିଚ ଭଅଁର
କାଶଫୁଲ ତେଣୁ ଡଡ଼ାଦିଏ ତାକୁ     ହଲାଇ ତା ଧଳା ଚଅଁର

‘ନାହିଁ ନାହିଁ’ ବାଣୀ ଭୂଷିତ,
ନଧୂବନ ଆଶେ ନାଲି କନଅର      ସ୍ୱିନ୍ନ ଗଂଡ ହୁଏ ଘଷି ତ !
ବାଟବଣା କଣା ମଧୂପ
ମହୂଆ ନିଶାରେ ହଜେ ଥର ଥର      ଫେରଯାଏ ପ୍ରୀତି-ଲୋଲୁପ ॥

—୧୧—

ଘାଟ-ନାଆଟିକୁ କୂଳରେ ଲଗାଇ      ଫେରିଲଣି ତେଣେ ଘାଟୂଆ,
ପାରି କରିଚି ସେ ପାନଖିଆ ପାଇ      ଗାଁ ଗୋଟାକର ହାଟୂଆ ।
ପଖିଆଟି ଥୁଆ ମୁଂଡରେ,
ମାଲି କରି ମାଛ ଦସୋରି ତହିଁରୁ      ପକାଇଚି ନିଜ ଗଂଡରେ ।
ହାତରେ ଧରିଚି ବଣିଚ,
ସୁଙ୍କାଏ ଦେଇ ବଘେଇ ଟାଂଗିର      ହାଟୁ ଆର ପାଲେ କଷିଚ ॥

—୧୨—

କାମ ସାରି କ୍ଷେତୁ ବାହୁଡ଼ିଲେଣି ତ      ଝୋଲିମରା ଯେତେ ମୂଲିଆ
କାଠଗୋଛି ଧରି ଫେରେ କାଠୁରିଆ,      ଦାନସାରି ଖଟି ହାଲିଆ ।
ବାଉରିଣୀଯାକ ନଟାରୁ
ଫେରିଲେଣି ତୋଳି ଝୁଂପୁରି, କୋଳି      ନେଡ଼ି ନଖ କଲି ଅଠାରୁ ।
ଆଣିଚି ଅବା କେ ଜାଳେଣି,
ଗୁଂଜରି ପୋକ ଆଣିଚି ବା କେହୁ      ବିକିବାକୁ ପଡ଼େ ଖାଲେଣି ॥

—୧୩—

ଗାଁ ପଚ୍ଛିମକୁ ପଠାଣ ସାହି ସେ      ତୋମିଜ ଖାଁର ବାଡ଼ରେ
“ଚ-କ-ଧ-ର-ର-ଖ” ଡାକ ଗୁଡ଼େ ଗଂଜା      ଚୂଲ ଝାଡ଼ି ଘର କଡ଼ରେ ।
ମାଗୁଣି ବକ୍‌ସ ଗୁହାଲେ
ପାଖ କରେ ଗୋରୁ, ଆର ପାଖେ ଛେଳ      ଶୁତେ ରଡ଼ି ଗୋଳ ଚହଲେ ।
ଏରଫାନ ମିଆଁ ଅଳସେ
ବଡୁ ବଡୁ ବଡ଼ି ଟାଣୁଅଛି ହୁକା      ଗୁଡ଼ୁ ଗୁଡ଼ୁ ନିଶ ବଳାସେ ॥

—୧୪—

ବାଣେଲ ଦେଉଳେ ବଢ଼ିଚ ଆଳତ, ଯାଚଚ କେ ପଣା ମାଠିଆ
ମାଟି ଘୋଡ଼ା ପଣେ ଥୁଆ ଘରକଣେ, କାଲଶୀଟି ପଗ୍ର ବାଟିଆ ।
ପଣା ସଂକ୍ରାଂତି ଦିନରେ
ଉଷାହେଲେ ମାଆ କହିଲେ ସପନ ଚଂଡିଆଣୀ ବୁଢ଼ୀ କାନରେ ।
“ଭସ୍ମ ଗୁଡ଼ ଗ୍ରାମବାସୀଏ……
ନଆଁ, ପାଣି, ବାଡ଼ ସବୁ ସିବ ଗୁଡ଼ ଜାଳଦେଲେ ଦୀପ ଅଶୀଏ ।
ଶତ ଜୁହାର ତା ଚରଣେ,
ଗ୍ରେଟ ଗାଆଁଟିର ଭସ୍ମ-ବିନାଶିନୀ ମଂଗଳ ପଦ ଶରଣେ ।।



## ବାପା ବାପା ପକାଇଲା ଝୁର

ଶୁଣିଲଣି ମିତ,
କଥା ଏକ ଅତି ଆଚଂବିତ
ଦିନକରେ ବାହୁଡ଼ୁଛୁ ଘରେ
ସ୍ନାନ ସାରି ଏକ ଦି'ପହରେ ।
ଜନହୀନ ନିଶବ୍ଦ ପଥ,
ଧାନଶିଆ ତଳେ ତଳେ ପାଣିର ଯେ ଚାଲିଅଛି ରଥ ॥

ମୂଲିଆଏ ଫେରିଲେଣି କାମୁଁ,
ନିଜ ଛାଇ ଗୋଡ଼ ତଳେ ମୁଂଡ ନୋଇଁ କରିଯାଏ ଚୁମୁ ॥

କୋଉ ନାସୀ ବଂକା ହୋଇ ଯହିଁ
ମିଶିଅଛି ଆଖୁବିଲେ ସରକାରୀ ଫାରମରେ,—ତହିଁ
ମାଇପିଂକ ଗାଧୋଇବା ତୁଠ;
ଖରାରେ ଶୁଖିଛି ପାଣି, ଥିଲେ ଥିବ ଅବା ଢନଫୁଟ ॥

ତୁଠେ ଥୁଆ ଦାଆ, ଘାସବିଡ଼ା,
ପାଣିରେ ପେଟେଇ ପଡ଼ି ହୁଂକଲଟା ହୋଇଥିଲା ଛୁଡ଼ା ।
ହଠାତ୍ ମୁଁ ଦେଖିଲଇଁ ଚାହିଁ,
ଅଂଟାଏ ପାଣିରେ ଠିଆ ନାରୀ ଏକ ଜଳେ ଅବଗାହି ॥

କାମି ଲୁଗା କାଢ଼ି ନିଜ ଦେହୁଁ
ମାଜୁଥିଲା ଆନ ମନେ ତନୁଲତା ଆପଣାର ସେହୁ ।
ଫିଟିପଡ଼ି ଓଦା କେଶ ତା'ର
ନୀବି ତଳେ, ଝୁଲିଥିଲା ଶିଥିଳିତ ଚାରୁ ଚଂଦ୍ରହାର ॥

ମୁଖଟି ତା ଦରପଣ ଭଳି
ଖରା ତେଜେ ଦିଶୁଥିଲା ଦାଉ ଦାଉ ନିଜ ଗ୍ରୁଏଁ ଝଳି ।
ବିଂଦୁ ବିଂଦୁ ଜଳ ତହିଁପରେ
କମଳର ହେମ-ପତ୍ରେ ବାରି ସମ ଲାଗୁଥିଲା ମୋରେ ॥

ଗାଧୋଇବା ଡେରି ହବା ଦେଖି
କୂଳେ ତାର ଶିଶୁପୁତ୍ର 'ବୋଉ' 'ବୋଉ' ଡାକୁଥିଲା ନିକି ।
ନୂଆ ହୋଇ ହୋଇଛି ସେ ମାଆ,
ତନୟରେ ବୋଧ ଦେଇ କହୁଥିଲା, "ବାପଟା ମୋ ଥାଆ,
ସଇଲଣି, ଯାଉଛି ମୁଁ ରହ,"
ଅଧ ସରାଗର ଭାଷା, ଭୁଲିଗଲା ଶିଶୁ ନିଜ କୋହ ॥

ସେଇ ବାଟେ ଯିବି,
ସଳଖ ସେ ହିଡ଼ ଡେଇଁ—ଦୋଦୋ ପାଂଚ ଭାଲେ କି କରିବି ?
ଗଲା ଝାଡ଼ି ଖଂଡି ଖାସ ମାରି
ଜଣାଇଲି ମୁଁ ଆସିଛି ଅବାଂଛିତ ଏକ ପଥଗୃହୀ ॥

ଲଜେ ଦଂତେ ଚପି ତା ବସନ
ସଜାଡ଼ିଲା କେଶବାସ କଲା ଶୀରୁ ନିଜକୁ ଗୋପନ ।
ଆଡ଼ ହୋଇ ଛୁଡ଼ାହେଲା ତେଣେ
ମୁହିଁ ଗଲି ମୋ ବାଟରେ, ପଦ ମୋର କଢ଼ାଇଲା ଯେଣେ ॥

କାଂଧେ ଥିଲା ପାଚିଲା ଗାମୁଛା,
ଖରାଟାରେ ଜଳୁଥିଲା ଦେହଗୋଟା ଝାଳ ଲାଗି ଭିଜା ।
ନିଜ ବାଟେ ଗଲି ମୁହିଁ ଘୂରି,
ହଠାତ୍ ଶୁଣିଲି ପଛୁଁ, 'ବାପା ବାପା' ଡକାଏ କେ ଝୁରି ॥

ଅଛି ଗ୍ରେଟ ଦରେଶି ତା ଭୂଷା,
ଏଣେ ଦୂରୁ ଲଜ୍ଜାବତୀ ଆକଟୁଚ ଫୁଲାଇ ତା' ନାସା ।
ଓଠ ଚପି କହୁଚ ରୋଷରେ—
"ଭୂମି ହୁଅ, ଭୂମି ହୁଅ, ଲୋକହସା କରାଇବୁ ମୋତେ ।
ଆଜିଯାକେ ଲୋକ ନ ଚାହିଁଲୁ,
ରହ, ଆଜି ଟାଂକେ ଛେଚ ଦେବ ମଜା ଛଡ଼ାଇ ପହିଲୁ ।।"

ଗୃହିଁଲାରୁ ହେଲା ଗୃରଆଖି,
ଲାଜରେ ବୁଲାଇ ମୁହଁ ଓଢ଼ଣାଟି ନେଲା ଥରେ ଢାକି ।।

ମୁହଁ ପୋଛି ପଡ଼ିଲା ଝାଉଁଳି,
ସରମେ ମଉଳିଗଲା ଛୁଆଁ ଲଗି ଅବା ଲାଜକୁଳୀ
ମୁଁ ଗଲି ମୋ ନିଜ ବାଟେ ବୁଲି,
ତଥାପି ଅବୋଧ ଶିଶୁ 'ବାପା ବାପା' ପଛୁ ଗ୍ଭଡ଼େ ହୁଲ !!



# ଜମିଦାରଂକର ଷଂଢ

ମିଥୁନେ ଗାର ଦେଇ ଆଷାଢ଼େ ବେଉଷଣ
ସନ୍ଦେଇ ଜେନା ଏସୁ କରଛି ଖଗି ମନ ।
ଫଳିବ କେର କେର ବିଲରେ ସୁନା ଧାନ,
ଖଳାରେ ସାଇତିବ କଳେଇ ଲିପି ଥାନ ।।

ଓଳିଆ ବାଂଧି ଅବା ରଖିବ ଖଞ୍ଜା ଘରେ,
ସେତିକି ସଂବଳ ତ ଗୋଟାକ ବରଷରେ !
ପନ୍ଦ୍ରଳ ଆଷାଢ଼ରେ ଅଗ୍ରର ଘାସ ଯେତେ
ବୁଲାଇଅଛି ମନ୍ଦ ଯତନେ ନିଜ ହେତେ ।।

ବଗ୍ରର ଦଶ ଦିନେ ସାରଛି 'ଦୋଅଡ଼' ସେ
ଖେଳୁଆ ପକାଇଛି ଆବର ମନ ତୋଷେ ।
'ଗଳିଆ' ମୁନ୍ଦ ଯେତେ ଗ୍ରଟିଛି ହିଡ଼ମାନ,
ପାଳକ ଏସୁ ମେଘ ନଧୋକା ଚଷା ଜାଣ ।।

ଗଲଣି ଏକ ମାସ; ହେଲଣି ଗରଭଣା
ପାଂଚଛି କେତେ କଥା ଗୃଷୀ ସେ ତାକୁ ଜଣା ।
ଅମଲ ପରେ ଋଣ ଶୁଝିବ ସାହୁଘର
ସୁଧ ତ ହେଲା ଦେଢ଼ା; ବଡ଼ ସେ ହରବର ।।

ତା'ପରେ ଆସୁଚି ତ ଆଗରେ ମାଣବସା
ଏଥର ପିଠାପଣା ହୋଇବ ଚଉକଷା ।
ଆଗରୁ ଘରଣୀରେ କହିଛି କର ଆଂଟ
ଏ ସାଲେ ମାଘ ଶେଷେ ଖଳିଆବାଡ଼ି ହାଟ,

ଯାଉ ମୁଁ ଆଣି ଦେବ ଗଢ଼ାଇ ଅଂଟାସୂତା
ନ ଦେଲେ ସୁଆଗ ଯେ ଛୁଡ଼ିବ ଯଥା ସୂତା ।
ଝିଅର ନୋଳାହଲ ପଡ଼ିଛି ପୁଣି ବଂଧା
ବଳଦ କିଣା ହନୁଁ, ସେ ଏକ ମହାଧଂଦା !!

ନାତ ସେ ରୁଷିକାଛି ପଶଇ କଣ ଘରେ
ଯେତେ ଯେ ମଣାଇଲେ ଫସର ଫାଟି ଗଲେ ।
ନ ଦେଲେ ମୁକୁଳାଇ ହେବ ତା' ଅମାନତ,
ଭରଣେ ଧାନ ଆଗୁ ରଖିବା ଉଚିତ ତ !!

ତା ପରେ ଅଛି ପୁଣି ଦେଏଣା ହାରୁ ହାତ
ମୂଳିଆ ଦୋକାନରୁ କାଢିଆ ଟଂକା ସାତ ।
ହୋଇବ ଖରାହନେ ଗାଆଁରେ ରାମଲୀଳା
ତା' ଭାଗେ ଭେଦା ଢେର ନଉଥ ଯା' ପଡ଼ିଲା ।।

ଦେବାକୁ ହେବ ପୁଣି ବୋଝେ ତ ମୁଢ଼ି ଭୁଜା;
ଆସୁଛି ଅଳପକେ ଚଇତ-ଘୋଡ଼ା-ପୂଜା ।
ଶାଳୀର ବାହାଘର ବେଶିର ଅଛି ପୁଣି,
ନ ଦେଲେ ମାଇପ ତ ଝାଡ଼ିବ କଳା-ମୁଣି ।।

ଛୁଆଣି ହେବ ଘର—ମୂଳିଆ ନେବେ ଭଡ଼ା
ମଜୁରି ଗୃହଅଣା ଜଣକେ, ଅଛି ବଡ଼ା ।
ମନାସିଅଛି ପୁଣି ଯାଆଁଳା ବୋଦା ଏକ
ମଂଗଳ ଚଂଡୀ ପାଖେ କାଟିବ ବୋଲି ବେଙ୍କ;

ପୁଅର ବେମାରିରେ ରଖିଲେ ଠାକୁରାଣୀ
ନ ଦେଲେ ଅପରାଧ ଲଗିବ ଗୃହପ୍ରାଣୀ ।
ତା ପରେ ଖଜଣା ଓ ଟିକସ ଅଛି କେତେ
କୋରଖ ଢେର ହେଲେ; ପାଚବ ପିଠି ବେତେ ।।

ଗାଆଁର ଜମିଦାର ବଡ଼ ସେ ଦୁରୁଦଂଡ
ପିଂଢାରେ ବସିଥିଲେ ସରବେ ଲଂଡଭଂଡ ।
ନାହିଁ ତ ସଡାଣବେ ହେଲେ ବା ସେ ନଥଂଟ
ପାହୁଣା ତାଂକ ଆଗ ଶୁଝିବା ଯାଏ କଂଟ ॥

ଏ ବାଦେ ଅଛୁ ପୁଣି ସୁନଆ ଭେଟି ମୋଟ
ମାମଲା ରସିପତ ସବୁ ତ ଏକଜୋଟ !!
ଏପରି କେତେ କଥା ସଦେଇ ଭାଲେ ମନେ
ରଖିବ ଏକା ସେହୁ ଉପରେ ଅଛୁ ଜଣେ ॥

କେତେ ବା ହେବ ଧାନ ସବୁ ତ ସେଇଥିରୁ,
ଛଦାମେ ନାହିଁ ଲଭ; ଖାଝୁଣି ବଡ଼ ଗୁରୁ !!

× × ×

ଆସିଲା ଧାନକଟା—ହୋଇଲା ସେ ଆକୁଳ
ସଦେଇ ଭାବେ ବସି କରିବ ଅନୁକୂଳ
ଉତ୍ତମ ବାର ଦେଖି; ବଚନ ପଗ୍ରା ଗାଇ—
"ବୁଧରେ ଠିଆବୁଣା; ଶୁକରେ ବସି ଦାଇ ।
ବଢାଇଦେବ କ୍ଷେତ ମଂଗଳବାର ଦେଖି"
ଏ କଥା ମିଛେ କହେ ପୋଥିରେ ଅଛୁ ଲେଖି ?

× × ×

ହୋଇବ ଧାନକଟା, ସକାଳ କାଲି ହେଉ
ଅଟଇ ଶୁଭଦନ, ନାହାକ କଥା ଏହୁ ।
ପାଇଲା ଗ୍ରାଢ ମଠେ, ସକାଳୁ ଦାଆ ଧରି
ସଦେଇ ଅଂଟା ଭିଡ଼ ବାଲକୁ ଗଲା ଚାଲ ।

କାଖରେ ବଟୁଆ ତା' ମୁଂଡରେ ଗାମୁଛାଟି
ପାଂଚଣ ଖଂଜେ ଧରି ବାହାରେ ଧାନ କାଟି ।
ବରଷ ସାରା ଖଟି ଲୁଟିବା ଦିନ ଆଜ
ହସ ଓ ପୁଲକରେ ମୁହଁ ତା' ପଡ଼େ ଖାଜ ॥

ଦେଇଛୁ ମେଲ ମୁଖେ ପାଶୋରା ଗୀତ ପଦେ,
'କପଟପାଶା' ଖେମା ଧୀବର ଭଣେ ଛଂଦେ !
ମିଳିଲା ଯାଇ ବିଲେ ଦେଖିଲା ସେ ଅଂଧାର,
ହୋଇଛୁ ଗୁରଖାର ଫସଲଯାକ ତାର ॥

ପାଚିଲା ଧାନଗଛ ଭୂଇଁରେ ଅଛୁ ଶୋଇ
ଗୋଟିଏ ହେଲେ ଧାନ ନାହିଁଟି ଆଉ ତହିଁ ।
କାଦୁଆ ଜମିଟାରେ ଲେଟୁଛୁ ସବୁ ପଡ଼ି
ପତରି ମୁଣ୍ଡା ସବୁ ଯାଇଛୁ ତହୁଁ ଝଡ଼ି ॥

ଦିଶୁଛୁ ହତଶିରି ତାହାର ସୁନା-କ୍ଷେତ
ପାଚିଲା ଧାନ ତା'ର କଲା କେ ହା, ଏମଂତ ?
ପଡ଼ିଲା ବସି ସେଥି ଶିରେ ସେ ଦେଇ କର
ଲେଟିଲା ଦାଆ ତାର ନୁଖୁରା ହାଡ଼ପର ॥

ଜୀବନ ନ ନେଇ ଯା' ଦେଲା ଏ ଅପଘାତ
ବୁଝିବ ଏ ଜଗତ କରେ ଯେ ଆତଯାତ ।
ଧରମ ଗଲା ଗୁଡ଼ି, ହେଲା କି କଳି କାଳ
ଗରିବ ବାପୁଡ଼ାର ଗୁହାରି ଶୁଣି କାଲ-

ପାଲଟିଗଲେ ଦିଅଁ—କରିବ ଏବେ କିସ
ଅଂଧାର ଦେଖାଗଲା ତାହାକୁ ଦଶ ଦିଶ ।
ଏପରି ବେଳେ ଦୂରେ ଶୁଭିଲା ହଂବାରଡ଼ି
ଦେଖିଲା ଗୃହିଁ ଜେନା ଓଟାରି ଧାନଗଡ଼ି,

ଲାଂଜକୁ ପିଟି ଉଗ୍ର ହୋଇଛୁ ଅରଜୁନା
ସାଆଂତ ଘର ଷଂଢ—କରଛୁ ସବୁ ଚୂନା ।
ଗୋଟାଇନେଲା ଗୁଣେ ପଥର ଏକ ତାକୁ
ଭାବଲା ଏକାଥରେ ଫଟାଇଦେବ ତାକୁ ॥

ଲଗିଲେ ଲଗୁ ପାପ, ବାଂଧିବ ପଛେ ହାଡ଼
ମାତର ସେ କଷଣୁଁ ବଳ ଯେ ବେଢ଼ ମାଡ଼ ।
ଗାଆଁର ଜମିଦାର ତାଂକର ଷଂଢ ସେହୁ
ବଡ଼ ସେ ବଳୀୟାର କରବ କସ କେହୁ ?

ପଡ଼ିଲା ଖସି ଶିଳା, ଧରମ ସାକ୍ଷୀ କରି
ଧୋଇଲା ବଳ ମାଟି ଲୋତକେ ଆଖି ଭରି ।
ମୁଂଡରେ ହାତ କୋଡ଼ି କରମ ନିଜ ଦୋଷୀ
ଅଇଲା ଧୀରେ ଘରେ ବାହୁଡ଼ି ଦୁଃଖେ ଲସି ॥

ପହଂଚି ଘରେ ସେହୁ ଶୁଣିଲା ଘରଣୀ ତା'
କହୁଛୁ 'ଶୁଣିଲଣି' ହୋଇ ସେ ଅତି ଭୀତା—
"ଆମର ନେଡ ଗାଈ ଛୁଂଡାଇ ଆଜ ପଘା
ସାଆଂତ ଘର ବାଡ଼ ଭାଂଗିଲା ନଆଁ ନଗା ॥

ପଠାଇଦେଲେ ବାବୁ ତାହାକୁ କାଂଜିହତା
ମାସୁଲ ଲଗିବ ତ ନଅଣା;—ଭଲ କଥା ।
କାମୁଡ଼ି କୁଟା ଦାଂତେ ଜଣାଣ କଲି ଯେତେ
ଘେନଲା ନାହିଁ ପଦୁ ପିଆଦା କଥା ମୋଟେ ॥

ମାଗିଲା ପାନଖିଆ ନଗଦ ସାତଣା ସେ
କାହୁଁ ବା ଦେଇଆଂତ ? ଥିଲା କି କିଛୁ ପାଶେ ?
କରିବା ଏବେ କସ—କହନ ବୁଣ ମୋରେ
କଉଡ଼ି କଡ଼ାଏ ତ ଖୋଜିଲେ ନାହିଁ ଘରେ ॥"

× × ×

ଗୃହିଁଲ ଥକା ହୋଇ ବୁଲାଇଦେଲା ମୁଂଡ
ଦେହରୁ ବହେ ଝାଳ ପଇନେ ନାହିଁ ତୁଂଡ ।
ଭୂମିଷ୍ଠ ହୋଇ ତହିଁ ସବୁ ସେ ଶୁଣିନେଲା,
ନିରାଶା ରୋଷେ ଶେଷେ ଭାଷିଲା, "ଭଲ ହେଲା ॥" *



* ପ୍ରଥମବର୍ଷ ଦ୍ୱିତୀୟ ସଂଖ୍ୟା 'ନାୟକ' ପତ୍ରିକାରେ ପ୍ରଥମେ ପ୍ରକାଶ ପାଇଥିଲା । (୧୯୩୪)

# ରେଂଗୁନ-ଯାତ୍ରୀ

ଗାଁ-ଶେଷେ ଏହୁ    ଦେଖା ତ ଗଲଣି
ଇଟା ମାଟିର ଘର,
ସେ ତ ଇଷ୍ଟେଶନ ଘର ।
ମୁହିଁ ମୁଂଡାଉଚ    ପେଟରାଟି ତୋର,
ଛତା, ବାଡ଼ି, ଲଣଟଣ ।
ତୁ ଧ' ଛତା, ବାଡ଼ି ଲଟଙ୍କଣ ॥

ହୁଗୁରକୁ ତୁହ    ପକା ଶୁଆଇ
ଖୋଇଦେ ଦୁଧ କଲେ
ଆଲେ ପଡ଼ିଯିବ ଧର୍ କୋଲେ ।
କାନକୁ ବାଂଧ    ଅଂଟାରେ ଭିଡ଼ି
ଝୁଂଟିପଡ଼ିବୁ ତଲେ ।
ଆଲେ କଥା ମୋର ମାନ ଭଲେ ॥

ରଖିଛୁଟି ଆଲେ    ହୁଗୁରବୋଉ ତୁ
ଚୂଡ଼ାଖାଇ ଦଅଁ ଧଂଡା,
ପୁଣି ବଡ଼ଠାକୁରଂକ ଧଂଡା ।
ପୁଷା ମୁଲକରୁ    ଆଣିଥିଲୁ ପରା
ମଗୁଣିର ମାସେ ନଂଡା ।
ଆଲେ କେଲୁ ସାହୁ ପୁଅ ନଂଡା ॥

ଶୁଖିଯାଏ ପାଟି ଦେଖୁଚି ତଳ୍ପତ
ବଟୁଆରୁ ଟିକେ ଏତା—
ମୋର ମନଟା ନାଗୁଚ ପିତା ।
ଅଇଲବେଳେ ତ କାଂଦିଲ ଖୁଡ଼ୀ
ଭୁଲି ମୁଁ ପାରବ କ ତା ?
ଆଲେ ମନଟା ନାଗୁଚ ପିତା ॥

ଠିଆହୁଅ ଟିକେ ଦେଖିନଏ ଥରେ
ଗାଁକୁ ବୁଲାଇ ଆଖି,
ସତେ ଆଉ କି ପାରବା ଦେଖି ?
ବାହୁଡ଼ି ଆସିବା କଏ ସେ ଜାଣିଚ
ଠାକୁରେ ଅଛନ୍ତି ସାକ୍ଷୀ ।
ଆଲୋ, ଆମେ ପରା ନରମାଖୀ ॥

ଆଗରେ ଦିଶୁଚ ଡାଲୁଅ ବାଲରେ
ଗୁଡ଼ାଏ ଉଂଚ ବାଡ଼,
ତହିଁ ମିଶାଇଛୁ ମୋର ହାଡ଼··· ।
ଟିକିଏ ବସିବା ଗଛ୍ ତା ଛାଇରେ
ଆଉ, ଦେଖିବା ଆଶା ତୁ ଛାଡ଼ ।
ପୁଣି, ଲେଉଟିବା ଆଶା ଛାଡ଼ ॥

ପାଗୁଳି କରୁଛୁ ଦେଖିଲୁଣି ସେଠି
ପଧାନ ଘରର ଗାଈ,
ସଦା ବୁଲୁଅଛୁ ଉଦାଖାଇ,
ଟିକିଏ ଆଉଁସି ଦେଉଥାଏ ତାକୁ
କି ସୁଂଦର ଆସେ ଧାଇଁ !
ଗୃହାଁ, ରଘୁ ପଧାନଂକ ଗାଈ ॥

ଗୋଠରେ ଶୁଭୁଛି ଧୁଡ଼୍‌କା ଶୁଣ୍‌ମ
ବଜାଏ ଗଉଡ଼ଟୋକା,
ଆରେ ଉପରସାହିର ଲୋକା,
ପଥର ଖଣିଠି ଗାଉଛି କେ ଗୀତ
ନ ଅଛି ଢଲେ ତା ଧୋକା ।
ଛାଡ଼ ସେ କଥା ପଛକୁ ପକା ॥

ବାଜିଲାଣି ଘଂଟି ଦଉଡ଼େ ଇଂଜିନ୍
ଅଇଲାଣି ଗୁହାଁ ଗାଡ଼ି,
ଅଣଗୃଣ ପର ମାଡ଼ି,
କୁଂପାନୀ ଘରର ରେଲ ପରି ତାହା
ଆସୁଅଛି ଧୂଆଁ ଛାଡ଼ି ।
ହୁଗୁରି ! ଦେଖିଲୁଣି ରେଲଗାଡ଼ି ॥

ଭାର-ବାବୁ ବସି କହୁଅଛି କସ
ଟିକଟ ବାବୁକୁ ଦେଖ ॥
ହଲାଉଛି ଖାଲି ବେକ,
ମାଗିବ ଇଲାଗେ ଲାଂଚ ନ ଦେଲେ
କାଟିବ ମୋ ନାମେ ଚେକ ।
ଆଜି ଟିକଟ ବାବୁଂକୁ ଦେଖ ॥

ଛୁଡ଼ା ହୁଅ ଟିକେ ଟିକଟ କରି ମୁଁ
ଆସୁଚି ଇଲଗେ ଧାଇଁ,
ରୁହ, ଯିବୁ ନାହିଁ ଗଣ କାହିଁ,
ହେବୁନ ଛାନଆ ଅ.ସୁଚି ସହିଲେ
ମଲ, ଶକଉଛୁ କାହିଁ ପାଇଁ ?
ଆଲେ, ଷ୍ଟେପରି ପଟିବ ନାହିଁ ॥

ସୁନାଟି ମୋହର ଚୂନା ହୁଅ ରୁହ
ଗଲେଣି ରେଂଗାମ ଭୂଇଁ,
ଶୁଣ୍ କହୁଛୁ ତୋ ବହୁ କୁଇଁ ।
ଗଢ଼ାଇ ଆଣିବ ରୂପାର ପାହୁଡ଼
ଭାବନା ନ କର ରୁହ ।
କରୁଛୁଟି ପଣ ମୁହିଁ ॥

ସାହୁ ଜମିଦାର ଡର ନାହିଁ ସେଠି
ସରବେ ଚଉଦପାଆ,
ମୁଁ ଲୋ ବଲେ ପିଟି ଗୃଣବାହା,
ପାହା ଅରଜବ ଘରର ଘରଣୀ
ତୁ ତ ରଖିବୁ ସାଇତ ତାହା ।
ହେ ତୁ, ତୁନହ ମୋ ମୁଂଡ ଖାଆ ॥

# ପହିଲି ରଜ

—ଆଗ ରାତି—

ମହୁଆ ନଶାର ଗହମ ପହଡ଼
ଖାଜ ଭଲ ହୋଇ ଖାଜ ତ ନାହିଁ,
ଝିପି ଝିପି ପୁଣି ଅନ୍ଧାନଆ ମେଘ
ଆପୁଡ଼ାଇ ତାକୁ ଦଏ ଶୁଆଇ ।

ପାଇବ ନାହିଁ କ ଆଜ ଏ ରଜନୀ
ଗୃହିଁ ଗୃହିଁ କଷା ହେଲଣି ଆଖି,
ଗ୍ଧଇଲଗା ନଦ ମାଡ଼ି ମାଡ଼ି ପଡ଼େ
ଖାଖି ପତା ବେନ ରହୁଛୁ ଲାଗି ।

ପୂର୍ବ ଦଗରେ ଫସର ଫାଟିନ
ରାବନ ତ କାହିଁ ଡାମରାକାଉ,
ମଶାଣି ବାଟରେ ଶଗଡ଼ିଆ ଖାଇ
ଗୀତ ତ ନ ଶୁଭେ ସେପର ଆଉ ।

ସରଗ ଘରର ନୂଆବୋହୂ କେବେ
କୁହୁଡ଼ି ଓଢ଼ଣା ମଥାନେ ଟାଣି
ବାସି ତରାଫୁଲ୍ ନେବ ଗୋ ଓଳାଇ
ଛୁଂଚଦେଇ ନାଲ୍ ଗୋବରପାଣି !

ପୂରୁବ ଅଗଣା ଲିପାପୋଛି କରି
ଝୁଇ ଆଲୁଅରେ ପିଠଉ ଗୋଳି
ଝୁଂଚୁକନା ତାର କେବେ ସେ ଆସି ଗୋ
ମେଘ ଆଡୁ ଆଲୋ ଦେବ ଗୋ ବୋଲି ?

ଅସରଂଢ ସତେ ଆଜିର ରଜନୀ
ଚଡ଼ିଲଗେ ବଡ଼ ନ ପାହେ କିଆଁ ,
ତା ସଂଗେ ଜୁଟିଚି ଅକାଳ ବରଷା
ପୋଡ଼ପାଡ଼ ମେଘେ ନ ଲଗେ ନିଆଁ ।

ସଜ ରଜ ସଜ ସବୁ ମଉଜକୁ
ନିଆଁ ଲଗା ମେଘ ଦେବ କି ସାରି
କଂଟା ଲଗେ ଶେଯ, କଢ଼ ଲେଉଟାଇ
ଗାଆଁ ଝିଏ ବେଳ କଳଂଢ ବାରି ॥

*

ଆଗରୁ କହୁଛି ରେବତୀ ଆଈକୁ
କାନେ କାନେ ତାର ପକାଇ ଗୁଣି
"ଡାକଦେବୁ ମୋତେ ବଡ଼ସଖୀଙ୍କୁଟି
ନୋହିଲେ ଦେଖିଥା ଭାଜିବ ଟାଣି ।

କାଇଁ ନ ଖାଉଣୁ ସବୁରି ଆଗରୁ
ଉଠାଇଦେବୁ ଲୋ ଶେଯରୁ ମୋତେ
ଆଗ ହୋଇ ମୁହିଁ ସୁନାପାଗ ନେବି
ଦେବୁ କି ନାହିଁ ତୁ କହନା ସତେ ?"

ତମୁଣି ସଂଜରୁ ମାଆକୁ ତାହାର
ଢଆରି କହୁଛି ବହୁତ କରି
"କାଆ ନ କରୁଣୁ ବୋଉ ଲୋ, ତୁ ମୋତେ
ଉଠାଇଦେବୁଟି ସେଦିନ ପରି ।

କାଂଦ୍‌ବନ ସଡ଼େ ଛୁଉଁଛୁ ମୁଁ ଆଖି
ଆଉ ଥର ପର ନ କର କୋପ ।"
କଥା ଶୁଣି ତାର ଆକଟିଲେ ମାଆ
ତିନଥର ଦେହେ ପକାଇ ଛେପ ।

"ଏଡ଼ୁଟିଏ ହେଲୁ ହେଜ ତୋ ନ ହେଲ
ସାତ ସାନଠଉଁ ହେଲୁ ତୁ ଊଣା
ବକ ବକ କରି ଅନାଉଛୁ ଖାଲି
ସାଇପଡ଼ଶାଏ ଦେବେ ଉଲୁଣା ।

ଇମିତକା କଥା କହୁଂଚନ ପରି
କେତେ ଥର ତୋତେ କରବ ମନା
ଉଠାଇବ ଭୂତ ଗଡ଼ରେ ନଚେଇ
ଏତେ ଟୋକାଟାର ବୁଦ୍ଧିକୁ ଅନା !

ଆଖି ଆଗେ ପରି ଘଟିଥାଇ ମୋର
ଆଉ ସାଇ ଖିମା ଗଉଡ଼ ବାଆ
ଦିନେ ପରି ସଡ଼େ ଗୋସାଣି ହାବୁଡ଼େ
ପଡ଼ିଯାଇଥିଲା—ଦଇବ ସାହା !

ଆଖୁ କଆଁରେ ଦେଇଥାଂତା ମୋଡ଼
ତେଂଡ଼ା ପଥରରେ, ରଖିଲେ ଦାଉଁ
ମାଆ ଅଁଳେଇ କୋଟି ପରଣାମ
ଡାକଦେଲେ ପରି କରବେ 'ଓଅ' ।।"

ତରୁଣ କହୁଛୁ ଅଖିକୁ ତରୁଣି
"ଖୁଡ଼ୀ ଲୋ ଗଡ଼ରୁ ଉଠାଇଦବୁ
କେତେକ କାମ ଅଚ୍ଛୁ ଅଂଟିବନ ବେଲ
ଛୁଅଁ ନ ମୋ ଦାହ—ଦେବଟି ସବୁ ?

ଗହଣାଯାକ ତ ମାଜିବାକୁ ବେଳ
ହେଲା ନାହିଁ ଆଜ କରବ କସ
ବୋଟେଁ ପୁଣି ଘଷି ପକାଇଲ ପିଠା
ଗୋଟାଏ ହାତ ନା ଦଶ ପଚିଶ ?

କାଠୁଆଏ ପୁଣି   ବାଟିଲ ହଳଦୀ
ପିଠଉ ବାଟିଲ ଦୁଇଟା ଶିଳ
ଭାଉଜକୁ ଯେତେ ଡାକିଲ, ମାଠେଇ
ଗୃଳଗଲା ପର୍ବ ! ମଜା ଛଇଲା !!!

କଉଡ଼ି ଖେଳରୁ ଚଂକାଲାନ ଡଳେ
କନ୍ଦୁଲାର ଦେଲା ମୁହଁକୁ ମୋଡ଼ି
ଦେଖିନ ଗ୍ଲେପର୍ବ ଗେଲବସର ମୋ
ଭାଇ ବ ତା ସାଥେ ଠିକଣା ଯୋଡ଼ି ।

ସାଇଜରେ ପୁଣି ଘଇତା ମାଇପେ
ଅଛନ୍ତି ନା ଏଇ ହଳକ ଏକା
ସାତ ରାଣୀଂକଠୁଁ ବଳି ତା ଦମାକ
ଇମିତକା ବୋହୂ ନ ଥେଲା ଦେଖା !!

ଦେଖିନ ଆଉ ମୁଁ ଭୂଆସୁଣୀ ବୋହୂ
ତାଠାରୁ ତାଠାରୁ ଦେଖିଛୁ ବଳି
ପଧାନ ବୋହୂ ତ ଏଡ଼େ ଘର ଝିଅ
ଖଟିଛନ ପାଦେ ସାତ ପୋଇଲୀ ।

ତା ପାଦ ଆଂଗୁଠି ନଖ-ଧୁଆ ପାଣି
ସାଥିରେ ଏଉଟା ହେବ କି ସମ
ଗୁଛାଟାରେ ଖାଲି ଦେଖାଏ ଭଡ଼କ
ଦେଖିଛୁ ବହୁତ ଅଲଣା ଛମ ।

ମଲା ରେ ଉଠମ କେତେ କାମ ଅଛି
ବସିଲେ ଏଠାରେ କ ହବ ମୋର ?
ଶୁଣିଲେ ସେ ପୁଣି ବସାଇବ ହାଟ
ବଗୃର ପଡ଼ୁଛି ବୋଲ ତାହାର ।

ଯାଉଛି ଲୋ ଖୁଡ଼ି ବଡ଼ସକାଳରୁ
ମନେକର ମୋତେ ଦେବୁଟି ଡାକ
ଏଗୁଗଂକ ନାଆ ଧଇଲେ ସିନା ମୋ
ଖାଇଲା ପତରେ ପଡ଼ିବେ ମାଛି !!"

❊ ❊

ମାଣିକ ଝିଅଟା ଶକେଇ ଶକେଇ
ହାଲଆରେ ଇଲେ ପଡ଼ୁଛି ଶୋଇ
ଫଜପହରରୁ ଖାଇ ନାହିଁ କଛି
ଡାକଲାରୁ ମାଆ ଚଂକଲା ନାହିଁ ।

ହେଁସୁଟାରେ ମୁହଁ ମାଡ଼ି ସେ ଶୋଇଲା
ଏଡ଼କ ଖୁମାଣୀ ଟୋକା ବକଟେ
ବାଆ ତା ହାଟରୁ ନାଲ ଛିଟ ବାଛି
ଆଣିଥଲେ ପଗ୍ର ମନ ଉପଟେ ।

ମାଇର ଝିଅର ମନକୁ ସେ ଛିଟ
ଗଲା ନାହିଁ ବୋଲ ଦେଖୁଥା ନାଟ
ଲୁହରେ ପଗ୍ର ସେ ଭସାଇଲା ମଗ୍ର
ପଶିଲା କଣରେ ଦେଇ କବାଟ ।

ଯେତେ ଯେ ଡାକଲେ ଫାଟିଫୁଟି ଗଲା,
ବୋଉ ତା ଶେଷରେ ପକାଇ ଗ୍ରଣ
କଗ୍ରଇଲେ ଠାଆ; ତଥାପି ପଗ୍ର ଲୋ
ଭଜଲା ନାହିଁ ତା ଟାଣ ଗୁମାନ ॥

* * *

ଗଉଣ୍ଡ ଝିଅଟି ବଡ଼ ବୋଧା ସତେ
ମାଛକୁ ନ କହେ ମଅର ବୋଲି
ବାପା ତା ଗରବ ମୂଲ ଲାଗି ଖାଏ
ମାଆ କୁଟେ ଧାନ ନିତି ଉଠିଲା ।

ଏତିକ ଝିଅଟେ ଘରଟା ଯାକର
ପାଇଟି ପତର ତୁଲାଏ ଏକା
ଉଇଁଲ ମୁହଁଟି ଉଜଳ ନ ହେବ
ପାତଳ ହସ ତ ରହିଛି ଲେଖା !

ଗୁଡଟା ପାହିଲେ କାଲି ହେବ ରଜ
ନାହିଁ ନୂଆ ଲୁଗା ପାଇବ କାହୁଁ ?
ତଥାପି ତାହାର ମିଠା ଆଖି ତଳେ
ନାହିଁ ତଳେ ହେଲେ ଦୁଃଖର ଦାଉ ।

ସଦା ହସି ଖୁସି ପାରବତୀ * ଭଳି
ଖେଳି ବୁଲି ନିତି କଟାଏ ଦିନ
ଆହା କରିବାକୁ ସାହା ଯାର ନାହିଁ
ବାହା ତାର ସିନା ଗୋପୀ-ଜୀବନ ॥

* *

ପାରିଜାତ ଆହା ପାରିଜାତ ସେ ତ
ରୂପେ ଗୁଣେ ପୂରା ଫୁଟିଲା ଫୁଲ
ଆଖ ପାଖ ଗାଆଁ ଦଶ ପଚଶରେ
ନ ଥିବ ଗୋଟିଏ ଝିଅ ତା ତୁଲ !

---

* ପାରବତୀ—ପ୍ରଜାପତି

ବଡ଼ ଶରଧାର ଝିଅ ସେ ବୋଉର
ବାପା ତା ଯାଇଛି ରେଂଗୁନ ଦେଶ
ପ୍ରତି ଗୁରୁବାରେ ପଠାଏ ଚିଠାଉ;
ପୂଜା ପରବରେ ହେବାକୁ ବେଶ ।

କେତେ କିସମର ପଠାଏ କବଟା
ରେଶମ ସୂତାରେ ହୋଇଛି ବୁଣା
ମେଅମ ସାହେବ ଢଙ୍ଗ ଲଗି କେତେ
ପଠାଏ କାଂଚଲା, ନୁଡ଼ୁକ, ଗୁଣା ।

ଗାଁ ଯାକରେ ସେ ସଭିଂକର ଆଖି—
ଦିଶିଲା ଭଳିଆ ଝିଅଟେ ଏକା
ମାଆମାନେ ଝୁଏ ନ ମାନଲେ ବାଗ
ଦିଅଂତି ପଟ୍ଟା ଲେ ପାର ଉଲୁଖା ! !

ନୂଆ ଯଉବନେ ଦେଇଛି ସେ ପାଦ
ଦିହଟି ତାହାର ମାଜିଲା ପର
ବଚନ କହିଲେ କାନକୁ ନ ଶୁଭେ
ପାହାଂତା ପହର ଫୁଟିଲା କଳ ।

ଲାଜ ଶରମରେ ଚଟୁଳ ଓଠଟି
ଅଲସେ ଅଲପ ପଡ଼ୁଛି ନଇଁ
ଜହ୍ନ ଆଲୁଅରେ ପୋଖରୀ କୂଳରେ
ସତେ କି ସେ ଅବା ଫୁଟିଲା କଇଁ !!

ସାତ ସରସାରେ ପାରଜାତ ସମ
ଝିଅଟିଏ ପଟ୍ଟା ମିଳିବ ନାହିଁ
ଗୁଡ଼ଲ ଗୋଟିକେ ଗଢ଼ିଛି କି ଧାତା
ରୂପକୁ ତାହାର ଉପମା ନାହିଁ !

ଅଧ ରାତି ଯାଏ ନିଜ ଘରେ ବସି
ସଜାଡୁ଼ଥିଲା ସେ ଗହଣା ବସି
ଢଳଗେ ପଡ଼ୁଛି ଘୁମାଇ ଆସନ୍ତେ
ସପନେ ଓଠଟି ଉଠୁଛି ହସି !!

ସଭିଏଁ ଯେ ଯାହା ପୁରେ ଅଚେତନ
ଉଠିବେ ଛନକେ ପାହିଲେ ରାତି
ରାତିଟା ପାଇଲେ କାଲି ପର୍ବ ଓଷା
ବରଷକେ ଥରେ ଏ ସଂକରାନ୍ତି !!

—ପହିଲି ରଜ—

ଏସନ ସମୟେ ବୁଡ଼ିଲା ମଠେଇ
ପୂରୁବ ଆକାଶେ ଫୁକୁଆ ତରା
ହେଂଗୁ ଅଳତାରେ ଚିତା କେ ଲେପିଲା
ସରଗ ଦୁଆରେ ଆଜି ଏ ପର୍ବ !!

କାଆ କାଆ କାଆ ଉନଥର କୁଆ
ପ୍ରତି ଦୁଆରେ ତ ଗଲାଣି ଡାକି,
ଯେ ଯାର ଉଠିଲେ ଆଖି ମଳି ମଳି
ନିଦରେ ଭୁଲତା ରହିଛି ଲାଖି !!

ଘାଟଆଡ଼େ ବେଗେ ଶୁଭିଲା ଚହଳ,
ହୁରି ଶବଦରେ ଉଚ୍ଛୁଳେ ସାହି
ବରଷକେ ଦିନେ ଆଜିର ଓଷାଟି
ଜଗତେ ଏହାର ତୁଳନା ନାହିଁ !!

ମେଳ ହୋଇ ସବୁ ଗାଆଁର କୁଆଁରୀ
ସ୍ନାହାନ ସକାଶେ ଚଳିଲେ ଧୀରେ
ଶରତର ଧଳା ବଳାକା ଧାଡ଼ିଏ
ଭାସିଯାଏ ଅବା ଆକାଶ-ତୀରେ !!

ଗଉଡୁଣୀ ଚାଲଇ ସଭିଂକ ଆଗରେ
ଗଣି ଗଣି ଝଙ୍କ ପକାଏ ପଦ
ପାଦ ନଖ ତାର ଧୂଳିରେ ଲୁଚିଛି
ବଇଁଶୀରେ ହଜା ଅଧେ କ ଛଂଦ !!

ଥର ଥର ଲାଜେ ଚାଲେ ସେ ଡରସେ
ସମତାଲେ ଲଘୁ ଚରଣ ଚାଲ
ଚବୁକ ମିଶିଛି ଉରଜେ ତାହାର
ଶ୍ରମଝାଳ କଣା ଅଳପେ ଢାଳି !!

ଶଇଳ ଅନୂପେ ବନ-ବୀଥି ଗ୍ରୁଇ
ପଡ଼ି ମିଶିଛି କ ହୋଇ ସମାନ
ତେସନ ତାହାର ଘନକେଶ ଗୁମ୍ଫା
ସୁଠାମ କପାଳ ଆଦରେ ଜାଣ !!

ତା ପଛେ ଚାଲଇ ମାଣିକ ଝୁଣ୍ଟଣ
ଝୁଂଟି ଶୋଣିତରେ ଭସାଇ ପଥ
ଉଛନ ସେ ବଡ଼, ଓଷ୍ଠା ପରି ଆଜି
ମାନୁନାହିଁ କା'ର ବାରଣ ଶତ !!

ଗୋଡ଼କୁ ଗୋଡ଼ ତା ବାଜି ସେହୁ ଘାସେ
ପଡ଼ୁଂତାଣି କେତେ ଥର କେ ଜାଣେ
ପଛୁ ତା' ଡଉଁଟ ଧର ସମାଳଇ
ବଡ଼ ହୁସିଆର ପକ୍କା ସେ ଜଣେ !

ଏଡ଼େ ଖରଖସ ଠୋକା ସେ ଚଉରୀ
ଛଟକେ ବଚନ କହଇ ହାଣି
ଦଶୁ ନାହିଁ ବାଟ ଆଗରେ ଯେ ପଥ
ହରିଣୀନୟନା ଅଳପ କାଣୀ ||

ଆନ କଏ ଖ୍ୱପେ, 'ବଜୁ୍ଳି ଖଡ଼ିକା'
ଧୀରେ ପରିହାସେ କରି ଲ୍ରୁପବି,
''କାନ ଲଗି ବାଡ଼େ ଚରଲାଣି ଫାଲେ
ବାହାରୁ ଝଁରଇ ରଜତ-ଧାରି ॥''

ଆନ କେ ଆକଟି କହଇ, ''ଦୋପଟି
ହୋଇଥାଂନ୍ତୁ ତୁ ଲୋ ମରଦ ହେଲେ
କଥାରେ ତୋହର ବାଟୁଳି ନ ବାଜେ''
ଥଣ୍ଡା ଦରହାସେ ବଚନ ଗେଲେ ॥

ଦଳେ ଦଳେ ବାଳା ମିଳିଲେଁ ତ୍ୱରି
ନଜନ ସରସୀ ବଜନ କୂଳେ
ସଜଫୁଟା କଇଁ ବକଶିଛୁ ସହୁଁ
ହସିଉଠେ ଯାହା ଶିଉଳି ଫୁଲେ ॥

ବଂକେଇ ନଭିଲା ଗ୍ଳୁରୁ ଇଂଦୁ ରେଖା
ତୋଟା ଆଢ଼ୁଆଳେ ଗୋପନ ଲାଜେ
ଦୂରୁ ଶଗଡ଼ିଆ ଗୀତ ଭ୍ୱସିଆସେ
ଦେଉଳରେ ଶଂଖ ଆଳଥ ବାଜେ ॥

ସ୍ନାହାନ ସକାଶେ ବଡ ତର ତର
ତରିଟ ଡାକୁଛୁ ଘଡ଼ିକୁ ଘଡ଼ି
ବେଗରେ ଆସ ଲୋ ଉଛୁର ହୋଇଲା
କେତେ କାମ ଅଛୁ ସିଆଡ଼େ ପଡ଼ି ॥

ରେବତୀଟା ବଡ଼ ଖରଖରମୁହାଁ
କହିଲା ତଡ଼ତ, ''ରଖ ତୋ କାମ
ଝିଅ ବାହାଘର ସତେ କି ସିମିତ
ସହୁ ନାହିଁ ତର, ଆରେ ଯାଆ ମ ।''

ରୂଠ ପଥରରେ ବସି କେ କୁଆଁଶୀ
ମାଜୁଥିଲା ତାର କନକ ଚୁଡ଼ୀ
କହିଲା ଛଟକେ, "ବଳଲଣି ସତେ
ନାଣି ମୋ କଥାରେ ସପତ ବୁଢ଼ୀ ॥"

କଥା ତା ପାଟିରୁ ନ ସରୁ ଆନ କେ
କହଇ, "ରଖିଦେ ଗ୍ଲେପର୍ଗ ତୋର,
ଘଡ଼ିଏ ଘିହକୁ ମାଜିଲେ ନଠାଇ
ରସିନେବେ ତୋତେ ଆସି ଲୋ ବର ॥

କେତେବେଳ ବସି ହେଉଥାଉ ମାଠି
ଆଜହୁଁ ଇମିତ ଅଛୁ ତ କାଲ
ଘଇତା ଅଇଲେ କେତେ ଛଟା ତୋର
ବାହାରିବ ନାହିଁ ଆଲୋ ମାଆ ଲେ !!"

ପାରଜାତ ଦୂରେ ଗୁଡିଏ ପାଣିରେ
ଶୁଣୁଥିଲା ସବୁ ନୀରବେ କଥା
ତର ତର ହୋଇ ବାହାରପଡ଼ିଲା
ଚପୁଡ଼ା କାନରେ ପୋଛୁ ତା ମଥା ॥

ପାର ଦେଖାଦେଖି ସଭିଏଁ ବେଗରେ
ଗାଧୋଇ ପାଧୋଇ ଫେରିଲେ ଘରେ
ହସର ଲହର ଖେଳଇ କପୋଳେ
ବଚନ ନ ଧରେ ଜବା ଅଧରେ ॥

ସଭିଏଁ ଫେରିଲେ ଓଦା ବାସ ଜଡ଼ି
ଶିଥିଲ କେଶ କା' ଚରମେ ଲେଟେ
ଓଦା ବସନର ଶ୍ଲଥ ଅବକାଶେ
ଜାନୁ ଯଉବନ କାହାର ଫୁଟେ ॥

ମାଣିକଟା ଏଡ଼େ ତରତରୀ ସତେ
ନ ମାନବ ସେ ତ କାହାର ବୋଲ
ଆକଟି କହିଲେ ଓଲଟ ଜବାବେ
ପିଟିବ ହଠରେ ନ ଡର ଢୋଲ !!

ଲୁଗାପଟାରେ ତା' କିଛୁ ନାହିଁ ବାଗ
ଥରକୁ ଥର ତା' ଯାଉଛି ଫିଟି
କାଖରୁ କଳସୀ ରଖି ପଥ ପାଶେ
ଭିଡ଼େ ପୁଣି କଷି ଦାଂତ ନକାଟି ।।

ଆଗରୁ ସଜନୀ ଦରହାସେ କହେ—
"ଆଆ ତୁ ପଛରେ, ଯାଉଛୁ ଆମେ
ହାନିଲାଭ ହେଲେ ଦେବୁ ନାହିଁ ଦୋଷ
ଆମେ ଗଲୁଁ ଆମ ଆପଣା କାମେ ।।

ପଛରେ କାହାକୁ ଦେଇଛୁ କି କଂଟ
ଛଳ କରି ରହୁ ସେ ଲାଗି ଏତେ
ଏତେ ଥର କିଆଁ ଫିଟେ ତୋ ଖୋସଣି
ଦେଖାଇ ହେଉଥା ଗ୍ରେପରି କେତେ ?

ଗ୍ୱେରଗୋଲ ବଡ ବଡ଼ ଖ୍ୱେଅରଟା
ଅଂଧାର ବସିଛି ବାଟରେ ଜଗି
ଅଭିଡ଼ା ଟୋକାଟା ଏତେ ଛଟା କିଆଁ,
ଚେଡ଼ବୁ ଶେଷରେ ନକେ ଲେ ଖ୍ୱେଗି ।।"

ମାଣିକ ରାଗରେ ଝଟପଟି ବେଗରେ
ପଛରୁ ଓଟାରି ଧରେ ତା ଖୋସା
ମଲ ମଲ ବୋଲି ସହି ଗୁଡ଼େ ଦୂରି
"ନ ହେଲା ପଛକେ ଅଜ ଏ ଓଷା ।"

ଏମନ ସମୟେ ଆନ କା ପଣତ  
ବାଡ଼ରେ ଅଟକି ଚିରିଲା ଫାଳେ  
ଅପବାଦ ଭୟେ ପରମାଦ ଗଣି  
ବଗୁଲି ପୋଟଳା ତଳକୁ ଖସିଲେ ।।

ହସି କେ କହିଲା—''ରେ ନବ ଛଇଲା,  
ଝୁରଇ କେ ତୋତେ ଆଜିଠି ଦୂରେ  
ନୋହିଲେ କପାଇଁ ଚିରଂତା ପଣତ  
ସତ କଥା ଗଣ କହନ ତୁରେ ।।''

ସଭିଏଁ ହସିଲେ ଲଗିଲା ଟାପରା  
ବଗୁଲି ଭୂଇଁରେ ଗଲା କି ମିଶି  
ସଭିଏଁ ମଉନ ଯେଣୁ ଗଲା ଦୂରେ  
ସାଙ୍ଗର ପଛିଲା ଘରଟି ଦିଶି ।।

* * *

କି ଯୋଗରେ ମାଆ ପାଇଥିଲା ଛୁଆ  
ସାତ ଅଲକ୍ଷଣୀ ଉଆଁସୀ ରାତି  
ଟମଟୁଆ ପାଗଟା ଭଲ ହୋଇ ଖରା  
ପଡ଼ିଲାନି ଆଜି ସବୁ ଯେ ମାଟି ।।

ଗରଭିଣୀ ନାରୀ କୁକ୍ଷୀ ସମ ସ୍ଫୀତ—  
ଆକାଶଟା ଦିଶେ ମଇଳା ଝଳ  
ନବ ତମାଳର ନୀଳ ପତରକୁ  
ନେଡ଼ିରେ ଅବା କେ ଦେଇଛି ଦଳି ।

ବିରସ ମଳିନ ସକଳ ଭୁବନ  
ଫୁଲି ଫୁଲି ହୋଇ ବହୁଛି ବାଆ  
ଗାଁ ହାଟୁଆଏ ହାଟପାଳି ଜାଣି  
ସେପାରିକୁ ଛାଡ଼ି ଦେଲେଣି ନାଆ ।

ଗାଁ ମୁଂଡ ଖାଇ ସାପକଟା ନଈ
ଧୀରେ କୂଳ ଛାଲେ ଯାଉଛି ବହି
ନାଉରୀର ଗୀତ ଆହୁଲା ସାଥିରେ
ବାନ୍ଧି ରଖି କସ ଯାଉଛି କହି ?

ଦୂର ଅତୀତର କେଉଁ ରାଜପୁଅ
କଟୁଆଲ ସୁତ ହୋଇଲେ ସାଥୀ
କେଉଁ ସାଧବର ବୋଇତ ଭସିଲା
ଦୂର ଦଶଆର ଉଜାଣି କାଟି ।।

ସେହି କଥା ଆଜି ନାଉରୀ ଗୀତରେ
ତେଣା ମେଲି ଅବା ଆସୁଛି ଭାସି
ତରୁଣ ସୂରୁଯ ପୂରୁବ ପାହାଡ଼େ
ଉଇଁ ଆସୁଅଛି ତମିର ନାଶି ।।

ପାଣି କାଟି ଭେଲା ଯାଉଥାଏ ଭାସି
କେଉଟ ଗାଉଛି ସେହି ନଗାଂତେ
"ଝଡ଼ ବରଷାରେ ପଖିଆ ମୁଂଡେଇ
ପାର କରଦେବି ମୁହିଁ ସାଆଂତେ !!"

ପ୍ରଭାତ ହୋଇଲା ତମିର ହଜିଲା
ସକଳ ଆକାଶ କଜଳ ଦେହେ
ଅରୁଣ ଆଲୋକ କରୁଣ ପୁଲକ
ଢାକିଦେଲା ଅବା ନବଡ଼ ସ୍ନେହେ ।।

* *

ଋତୁମତୀ ବଧୂ ସମ ଏ ଧରଣୀ
ମୁହଁରୁ ତୁଟିଛି ସକଳ ଶୋଭା
ଅଞ୍ଚଳ ଉହାଡ଼େ ଅଳସେ ଫୁଟିଛି
ଅଲପ ଆଲୁଅ ବଉଦ ଚିର ।

ଘରେ ଘରେ ଆଜ ବସିଅଛି ମେଳା
ଆଜି ପର୍ବ ରଜ ବରଷ ପରେ
ଯଉବନ ତାର ପଦଚୋଲା କି
ପଡ଼ିଅଛି ଆଜି ପ୍ରତି କାନରେ ?

ଧରଣୀର ମାଟି ଆଜି ପଡ଼େ ଫାଟି
ଷିତି ଗଂଧେ ପୂରି ଉଠୁଛି ଦିଗ
ମାଟିର ପ୍ରତ୍ୟେ ପୁଷ୍ପ ଏ ତୃଣ
ସମୀରଣ କାନେ କହୁଛି କିସ ?

ମାଟିର ଏ ଧର୍ତ୍ତ୍ରୀ ରଜବନ୍ତୀ ଆଜ
ଯଉବନ ତାର ଆସିଛି ଫେରି,
ବରଷକେ ଥରେ ଆସିଛି ପର୍ବ ସେ
ନ ଆସିଲା ପରି ସରଗ ଶିର୍ଷ ॥

ଲୁଚି ଲୁଚି ପାଣେ ଆସିଛି କି ଶେଷେ,
ଛପି ଛପି ତାର ରୂପର ଦ୍ୱେର
ପରାଣେ ଯୋଡ଼ିଛି ଅତି ବିଚକ୍ଷଣେ
ଅପୂରୁବ କବା ପୀରତି ଡୋର ॥

ରୂପରସେ ଧର୍ତ୍ତ୍ରୀ ପିଇ କି ମଦିରା
ଉଚ୍ଛ୍ୱାସ ହୁଅଇ ଅଧୀରେ ଆଜ
ଆସିଛି ଆସିଛି ନବ ଯଉବନ
ଅଟକାଡେ ନବ ଜୀବନ-ରାଜ ॥

ପୁରେ ପୁରେ ଆଜି ଲାଗିଛି ଉଛବ
ଠାବେ ଠାବେ ବସେ କୁମାରୀ-ସଙ୍ଘ
ଝୀନ ଓଢ଼ଣାର ଚୀନ ଆଢ଼ୁଆଳେ
ଝରି ପଡ଼ଶେ ଗୃହୁ ସଜଡ଼ା ଗନ୍ଧ ॥

ଚରଣେ କାହାର ଗାରୁଡ଼ିଆ ସମ
ମଗୁଡ଼ି ଖେଳାଏ ସାପର ବେଣୀ
ଖିରୁ ଭୁରୁ କା'ର ଭଂଗୀରେ କେଣେ
ହେଳାରେ ଏକାଠି କୋଟିଏ ଏଣୀ ॥

କାଏ ସେ ପାରଚ୍ଛି ଅତି ଯତନରେ
ନବ କେତକୀରେ ଆପଣା ଜୁଡ଼ା
କଏ ସେ ଖୋସିଛି ଶ୍ୱେତକରବୀ ପୁଣି
ଆନ କେ ଖଂଜିଛି କୃଷ୍ଣଚୂଡ଼ା ॥

କାହାର ନତଂବ ଗୁରୁଭାର ଭରେ
ମଲ୍ ମଲ୍ ଗ୍ରୀବ ଗ୍ରୁଡ଼ଇ ବାସ
ସରୁ ଉରଜକୁ ଗୁରୁ ପୀତପଟ
କାହାର ନ ରଖି ଲଭଇ ଶ୍ୱାସ ॥

ମୃଦୁଣାଳ ବାହୁ-ପଟେ କା ବଳୟ
ଦ୍ୱିଗୁଣ କାହାର ଶୋଭାକୁ ହରେ
କପୋଳରେ କାର କସ୍ତୁରି-ବିଂଦୁ
ଗୋଲା-ଗୋରୋଚନା ପାଖରେ ଜଳେ ॥

ଶାଣ-ଶରବାଣ କାହାର ନୟନ
କଜଳର-କୋଷ ଅବୋଣ ରଖେ
ଚଂଦନ ଲେଖା ସିଂଦୂର ମଖା
ଶତ୍ରେ କାହାର ପୀବର ବକ୍ଷେ ॥

ମଧୁବନ-ଜାଲା ଅତି କଉଶଳା
କେ' ବର-ଯୁବତୀ ଦୂରରୁ ଗୁନ୍ଧେ
କୁମାରୀ ଜୀବନ-ପୁନା ଶାଖି ଭଳା
ଗୋପନେ ରୁହାଏ ଅଶ୍ରୁ-ନନ୍ଦେ ॥

* * *

ପାରିଜାତ ଆଜି ପାରିଜାତ ସମ
ଚଂପା ହଳଦୀରେ ସାଜିଛୁ ତନୁ
ହରିତ ବସନେ ସାଜିଅଛୁ ଦେହ
ବାଲରେ ଖୋସିଛୁ ନଆଲୀ ବନୁ !!

ମାପିଦେଲା ପରି ସରୁ ପଦ ବେନି
ଗୋଳା-ଅଲତାରେ ବଶୁଛୁ ତୋରା
ଚଂକ ମିଥୁନ କି ନାଳି କମଳରୁ
ରଂଗ କୋପଟି ତା' ଆଣିଛୁ ଗୋରୀ !!

ଜଉଲ ମୁହଁଟି ତଉଲ ହେବନି
ଜହ୍ନ ଆଲୁଅରେ ଧୋଇଛୁ ଅବା
କୋମଳ ଭାଲରେ ସିନ୍ଦୂର ବିନ୍ଦୁ
ଫୁଟି ଉଠେ ଯେହ୍ନେ ରକ୍ତ-ଜବା ।।

ଅଙ୍ଗୁଳି-କଲୀ ଚଂପକ ଜିଣି
ହରଗଉରୀରେ ହୋଇଛୁ ରଂଗ
କୁଙ୍କୁମ କିବା ଜୁଆଇ ଦେଇଛୁ
ନବଚଂପକ ତରଳ ଅଂଗ ।।

ଝାରୁ ଗୃହାଣିଟି ଭୂରୁ ଗହଳର
ଜଳଧାରୀ ପରି ପଡ଼ଇ ଝରି
ଟହ୍ଲି ଗୃହ୍ଲି ଅବା ପଲ୍ଲବ ଝାଉଁଳି
ଲାଜକୁଳୀ ଲତା ଲାଜରେ ଥରି ।।

ଖୋଲା ମୋତି-ଶୋହା ଦଂତ ତ ଆହା
ଭରୀ କଳସୀଟି ପରି ମଣ୍ଡନ,
ଗୃହ, ସୁଷମାରେ ହଂସଗମନାରେ
କମଳ କବର ହେବ ନନ୍ଦନ !!

ବାପ ତା ଦେଇଛି ରେଗୁଂନ ସହରୁଁ
ଝିଅ ପାଇଁ ନୂଆ ଶାଢ଼ୀ ପଠାଇ
ହାତକୁ ଦେଇଛି କେତେ ଭଲ କାଚ
ଗୋଡ଼କୁ ପାହୁଡ଼ ସବୁ ନଠାଇ ।।

ପାଦକୁ ଦେଇଛି ଗୋଲା ଅଲତା ସେ
ବୋତଲ ଭିତରେ ହୋଇଛି ଢିଲା
କୁଂପାନୀ ଘରର କାଗଜ ମାରିଛି
ଲେଖାଅଛି କସ କାଲା ନା ଧଲା ?

ଦେହକୁ ଦେଇଛି ରେଶମ କନାର
କେତେ କି ଦରବ ଆସଇ ନାହିଁ
ସାହେବ ଘରର କୁର୍ତା ସବୁ ତ
ସଭିଏଁ ଘଞ୍ଜିଏ ରହଂଛ ଗୃହିଁ ।।

ଗଉଡ଼ଘର ବୋଉ ବଡ଼ ସେ ଗରବ
ଧାନ କୁଟି ନିତ ପୋଷଇ ପେଟ
ନଡ଼ ଶରଧାରେ ଶଗଗାଡ଼ ଖୋଳ
ହାଟରୁ ମୂଲାଇ ଆଣିଛି ଛିଟ ।।

ଗୋରା ଦେହକୁ ତା ମେଘୁଆ ପତନୀ
ଘଟଣ ଦିଶଇ ଖାସା ବହଳ
ଘନ କେଶ ପାଶେ କନିଅର ଫୁଲ
ମନାଏ ତାହାର ସବୁଠୁଁ ଭଲ ।।

ଖାଲରେ ତାହାର ଖଲେଷି ପରାଏ
ଶୋହେ ଦୁଇ ଧାଡ଼ି କଜଳ ଗାର
କଳା ଚୋଖର କି ଧଳା କମଳରେ
ଜଡ଼ିଅଛି ପିଇ ମହୁ ଅମାର ?

ମାଣିକ ନାଇଛୁ ନାଲ୍ ଶାଢ଼ୀ ଖଂଡେ
ରଂଗ ମାଣିକଠୁଁ ଦିଶଇ ନାଲ
ବାପା ବୋଉଂକର ଗେଲବସର ସେ
ଗୁଚ୍ଛା କଥାଟାରେ ରହିବ ଖାଲ୍ ।।

ମାଣିକ ଅପାର ବେଶ ଦେଖି ତାର
ସାତ ସାନ ଟେମୀ ଲଗାଏ ଜଟ
ସିଏ ବି ନାଇବ ଦୁଇ ବରଷିଆ
ଦେହରେ ତାହାର ରଂଗିଣୀ ପାଟ ।

ଅପା ପରି ଖୋସା ସିଏ ବି ପାରିବ
ମୁଂଡରେ ପଛକେ ନ ଥାଉ ବାଳ
ହାତରେ ନାଇବ ଚୁଡ଼ୀ, ବାଜୁ, ଖଡ଼ୁ
କାଂଦି କାଂଦି ସେ ତ ହେଲା ବେହାଲ୍ ।।

ଟେମୀର ଅଜଟ ଦେଖି ଯେ ମାଣିକ
ନିଜ ହାତୁ କାଢ଼ି ଦିପଟି କାଚ
ସାନ ହାତେ ତାର ଦେଇଛୁ ଗଳାଇ
ଖସିପଡ଼ିବାରୁ ଦେଖୁଆ ନାଚ ।!

ନାଂଡିଆ ମୁଂଡରେ ତେଲ ଟୋପେ ଦେଇ
ମାଣିକ କାଟିଛୁ କଟକୀ ସୁଂଥି
ଅପା ପରି ତାର ଜୁଡ଼ା ନ ହେବାରୁ
ଦେଖୁଆ ଟେମୀର ବିକଳ କୁଂଥା ।।

ରେବତୀର ଭାଇ ନଟିଆ କୁଆଁଡ଼
ନ ଯାଇ କଣରେ ରହିଛୁ ଲୁଚି
ରେବ ଅପା ପରି ନାଇବ ନୁଡ଼ୁକ
ଫୋଡ଼ ପଛେ ନାହିଁ ନାକରେ କାଛୁ !!

ଝିଅଂକ ପରି ସେ ଅଲତା ନାଇବ
ପିଂଧିବ ସେପରି ଦକ୍ଷିଣୀ ପାଟ,
ସିଏ ବି ପାଳିବ ରଜଓଷା ଆଜି
ରେବତୀର ଏଣେ ଦେଖୁଥା ନାଟ !!

ରାଗରେ ପାଚି ସେ ଖଡ଼ିମୁଷା ମାରି
ନଟିଆକୁ କେତେ କଲାଣି ମନା
ମାଡର ନଟିଆ ବଡ଼ ଧୂରୁମୁଷା
ଘୁରି ଖଡ଼ିମାଡ଼ ନ କରେ ଘେନା ॥

ଅବଧାନ ବେତ ଯା ପିଠିକୁ ଡରେ
ଖଡ଼ି ଦୁଇବଣା କରିବ କିସ
ହଜମ କରିବା ଦୁଇଟା ପାହାର
ଅତି ତୁଚ୍ଛ କଥା, ମୋଡ଼େ ସେ 'କାନ' !

ସଜବାଜ ସାରି ଏକଜୁଟ ହେଲେ
ଖେଳ ହେବ ପୁଣି କାଂକିଆ ଗାତ *
ଡାକହାକ ହୋଇ ଠୁଳହେଲେ ସବୁ
ଝିଅ ବୋହୂ ପୁଣି ସଖୀ ସଂଗାତ ॥

ଖେଳିବା ଆଗରୁ ଯେଝା ବେଶ ସିଏ
ଆନକୁ ଦେଖାଏ କଳା କୁଶଳେ
ନିଜ ଦେହଲଗି ଭଲ ଦରବଟି
କେତେ ପରକାରେ ଦେଖାଏ ଛଳେ ॥

* ଖେଳବିଶେଷ । ଗୋଟିଏ ପଟାରେ କେତେକ ଗାତ ହୋଇଥାଏ । ସେଥିରେ ଦାନ ପକାଇବାକୁ ହୁଏ ।

ମାଣିକ ହାତର କାଚ ଦୁଇମୁଠି
ସବୁଠୁଁ ଘଟଣ, ସବୁଠୁଁ ତୋଗ
ମଗୁଆ ଅପାଙ୍କୁ ଦେଖାଇବ ବୋଲି
କେତେ ପାଂଚ ମନେ କରେ ସେ ପଗ !!

ବଡ଼ ଚତୁରୀ ସେ କହିଲା ଗେଲେଇ—
"ଗଂଗାଜଳ ଆଗୋ ଦେଖିଲଣି କ
ହାତ ପାପୁଲିରେ ଫୁଲ ଗୁଂଥୁ ଗୁଂଥୁ
କଂଟାଟାଏ ଗଲା ଗଲା ମୋ ନକ !!

ବାଂଧଇ ଖାଖା" କହୁସାରି ହାତ
ବଢ଼ାଇଦେଲା ସେ ଅଧ ତୁରତ
ଝଁଣ ଝଁଣ କାଚ ଝଁଟକି ଉଠିଲା
ନେଲୀ, ନାଲି, କଲା ପୁଣି ହରତ ।।

ସଜନୀ ତାହାର ଚାଲିଖିରେ ବଳେ
ବୁଝିପାରି ଦେଲା ମୁହିଁକୁ ପୋଛ
ବଡ଼ ଧୀରୀ ସେ ତ ହାଲିଲା ପାଣିକ
ବଢ଼ାଏନ ଗୋଡ଼ କେବେ କେମିଛ ।।

ତଗ୍‌ଟ ତାହାର ଖୁଡ଼ୀ ନୋଥପଟି
ନାଇଛୁ ଯତନେ ନାକରେ ତାର
ବଡ଼ ଇଚ୍ଛା ତାର ଦେଖଂତୁ ସଭିଏଁ
ଝଁଟକେ କେସନ ମୋଛ ପଥର !

ଆଖି ମଲା ମଲା ତେଣୁ ସେ କହଇ,
"ଆଲେ ଏ ବଉଲ, ଦେଖିବୁଟିକ
ଆଖିରେ ମୋହର ପଡ଼ିଗଲା କସ
ଯାଇଥିଲି ଯେବେ ଆଜ ନଈକ ।"

ଦେଖଣା ପରବ ଶେଷ ହେଲା ଆସି
ସଭିଂକ ମୁହଁରେ ନ ଧରେ ହସ
ଏକା ଗଉଣ୍ଡିଟି ସବୁଦିନ ପରି
ହୋଇଅଛୁ ଠିଆ ମୁହଁ ବିରସ !

ଗରିବ ଝିଅ ସେ ପାଇବ କାହୁଁଟି
ଭଲ ପାଟଲୁଗା ଗହଣା ଅବା
ତେଣୁ ଏ ଗହକୁ ରଖିଛୁ ସାଇତ
ଆପଣାକୁ ଦୂରେ ନ ମାଡ଼ି ସଖି ।।

ମାଣିକ ତା ଦେଖି ବଡ ଶରଧାରେ
ହାତ ଧରି ତାର ଆଣିଲା ଟାଣି
କହିଲା, "ଅଶୋକ ! ମନ ଦୁଃଖ କିଆଁ ?"
ସୁନାହାର ନିଜ ଗଳାରୁ ଆଣି ।।

ଗଉଣ୍ଡି ବେକରେ ନାଇଦେଲା ଧୀରେ
କହିଲା "ଗୁଣଟି ଖାଅ ମୋ ମଥା,
ନାଇଥାଅ ଆଜି, ଓଷା ଶେଷ ହେଲେ
ଦେବୁ ପଛେ କାଲି, ରଖ ମୋ କଥା

ଅଲପ ଲାଜରେ ହସି ସେ ବଗୁଣ୍ଡି
ଭୂଇଁକୁ ଅନାଇ କାଟିଲା ଗାର
ଆନର କରୁଣା ଆଜି ତା ଆଖିରୁ
କାଢ଼ିଲା ସଜଳ ଅଶ୍ରୁଧାର ।।

ବଡ଼ ସହଲରେ ଲୁହ ପୋଛୁ ଧୀରେ
ନଖରେ ଖାଲି ସେ କୁଂଚଲା କାନି,
ମାଣିକ ତାହାକୁ ନେଲା ହାତ ଧରି
ଦେବା ପାଇଁ ଦାନ ଖେଳରେ ଜାଣି ।।

ତାହା ପରେ ଖେଳ ହାରଗଲା ପାର
ଗୁଡ଼ଖାଇ ଲାଜେ ନ ପାରେ ଗୁହିଁ,
ଅନ୍ଧାରେ କେ କହେ, "ଆଜ ଓଷାଟାରେ
ପିଠା ସଂଗେ ଦେବୁ ରଖିଆ ଖାଇ ॥"

ଆନ କେ କହଇ, "ଶାଶୁଘର ଗଲେ
ଯଉତୁକ ନେବୁ ପାଣିଆ ନାନୀ"
"ମୋତେ ଟିକେ ଗୁଡ଼ ଦେନାରୁ ପାଣିଆ"
କହୁ ପୁଣି କେହୁ ଓଟାରେ କାନ !!

ଖେଳ ପରେ ପୁଣି ଗାଆଁ ବୁଲା ପାଳି
ସରବେ ବେଗରେ ହୋଇଲେ ସଜ
ସବୁରି ହାତରେ ରଜପାନ ଆଜ
ଅଳେଇଚ ଦାନା କେଡ଼େ ମଉଜ !!

ନପଟ ନଜନ ସାହି ବାଟୁଟାରେ
ଗୋଟିକ ପଛରେ ଗୋଟିଏ ଗୃଲେ
ସବୁରି ପଦରେ ଶୋଭଇ କଠୋଉ
ଠକ ଠକ ଶୁଭେ ପ୍ରତି ପାହୁଲେ ॥

କଠୋଉ ମଡ଼ାରେ ଅକୁଶଳ ପଦ
ଥର ଥର ଖସି ଭୂଇଁରେ ବାଜେ
କାଲେ କେ ଦେଖିବ ବୋଲି ସେ ବେଗରେ
ଜିଭକୁ କାମୁଡ଼ି ଝାଉଁଲେ ଲାଜେ !!

ମାଣିକ ଧଥର ପଡ଼ିଲାଣି ତଳେ
ଛଂଦହୋଇ ପାଦ ଦରଜ ଖସି
ଭୂଇଁରେ ଲାଗିବ ଚରଣ ପାଦୁକା
ଗୁଡ଼େନା ଦେଖ ମ' ଜଦକୁ ତାର !!

ଗାଁ ଝିଅମାନେ ବାହାର ହୁଅଂତେ
ସାମ୍ନା ଟୋକାଂକର ଲଗିଲା ଭିଡ଼
କିଏ ପିନ୍ଧୁଥିଲା ଖଡ ବାଉଆଡ଼େ,
କିଏ ଛେଲୁଥିଲା ଅବା ପଇଡ଼ ।।

ଥୋକେ କଲକତା ଫେରଂତା ଭେଂଡଆ
ଭାଗବତ ଘରେ ଗଂଜପା ଧରି
କୋଅଁଠ ଉପରେ କାମିଜ ଚଢ଼ାଇ
ଖେଳୁଥିଲେ କାହ୍ନୁଁ ମନ ନ କରି ।।

ସଭିଏଁ ଆସି ଯେ ଦାଂଡ ମଝିଁଠାରେ
ଗୃହୁଁ ଗୃହୁଁ ପରି ହୋଇଲେ ଜମା
କାଣିଆ, ଦନେଇ, ଅଜଗରି, ଚେମା,
ଅଈଁଠା, ସଦେଇ ପୁଣି ଧରମା ।।

ସରବେ ଅନାଇ ମୁରୁକିହସାରେ
ଆଖି ଠାରି କେତେ ଦେଖାଂଇ ଠାଣି
କିଏ ସେ ମାରଇ ଖଂଡ କାଶ ପୁଣି
ଛିଂକ ଆସି ନାକୁ ବହୁଛି ପାଣି ।।

ରାଇଜଯାକର ସରଦ, ଗରମ,
କାଶ, ଛିଂକ ଆସି ହେଲେକ ରୁଂଡ
କିଏ ସେ ସାଉଁଲେ ବାଳ ପୁଣି କିଏ
ଆଡ଼ ଗୃହାଣିରେ ହଲାଏ ମୁଂଡ ।।

ନାଗର ଠାଣିରେ କିଏ ମେଲେ ଗୀତ
ଭଂଜକବିଂକର 'ବଜାରବୋଲି',
ଆନ କେ ନଜର ମୁହଁଠାକୁ ପୋଛେ
ଝାଲ ନାହିଁ, ମିଛେ ଲୁଗାଁରେ ଦଳି ।

ଏକାଦୁଣିଆଁଙ୍କ ପିଠା ଖାଇ ଆଜ
ପେଟକୁ ଫୁଲଇ ମାରେ ହାକୁଟି
ଲୁଚ ଲୁଚ ପଛୁ ଧାଇଁଆସି ଖରେ
ଗଉଣ୍ଡ ଗୋଡ଼କୁ ଦେଲା ଚମୁଟି ॥

ତା' ପରେ ତାହାର କଠୋର ଓଟାର
ଲଗାଇଦେଲା ତା ଗୋଡ଼କୁ ତଳେ
ସାଂଗ ପିଲାଂକର ଦେଖିଆ କୁରୁଡ଼ି
ହସି ହସି ଗଡ଼ିଯାଆଂନ୍ତି ଖେଳେ !!

ତସ୍ତେ ପଛରୁ ଆଖିକୁ ତରାଟି
ଦେଲା ତା ପିଠିକୁ ଗୋଇଠା ଏକ
ଏକାଦୁଣିଆର ମାଡ଼ ଦେଖି ତାର
ସାଥୀଏ ପଳାଇଗଲେ ସଲଖ ॥

''ଅଲପାଇଗିଡିଆ ଗଜାବଅସିଆ
ରଡ଼ଚୁଲ୍ଲା ତୋତେ ନ ଖାଏ ବାଡ଼ି
ଭୂଆସୁଣୀ ଝିଅ ସାଥୀରେ ନାଗୁଚୁ
ଦାଂତକୁ ତୋହର ଦେବ ଉପାଡ଼ି ।

ରହ୍‌ଆ ତୋହର ଅବଧାନେ କହ୍ଣ
ନାକବାଲ ତୋତେ କରିବ ଠିଆ
କାନରେ କହୁଚୁ ଫାଶ ଦେଇ ଅନା,
ନୋହିଲେ ମୁଁ ତୋର ମାଇପ—ଛୁଆ !

ଯେଉଁମାନେ ତୋତେ ପଠିଆଇଦେଲେ
ଶିଖେଇ ମତେଇ ରଖିବେ ଆସି,
ଚୁଲ୍ଲାପଣାଂକର ରସିକପଣରେ
ନଥାଁ ଲଗୁ, ପୋଡ଼ ମରଂଗୁ ଝାସି ।

ମଲ୍ଲୀରେ ମୋହର ଦେଖିନ ନାଗର
କଖାରୁ ଫୁଲକୁ ପାରୁଡ଼ା ପୋକ
କେଉଁଥି ପାଇଁକି ଏତେ ମ ଦ୍ୱମାକ ?
ଝୁଣିଦେବ ରହ ଯେସନ ଜୋକ ॥''

ଏକା ରଗଡ଼ାକେ ଯେତେକ ମରଦ
ପଳାଇଲେ ମୁହଁ କରି ସେ ବଂକା
ଆଂବଲାଇ ମୁହଁ ଗୃଟେ କେନ୍ଦୁ ଓଠ
ଖାଇଛୁ ଅବା ସେ ଦକ୍ଷିଣୀ ଲଂକା ॥

ତଟ୍ଟର ପାଟି ନଅାଁ ହୁଲା ସେ ତ
ସରବେ ତା' ଶୁଣି ଗଲେଣି ଶଂକ
ଜଣେ ଅଧେ ଖାଲି କବାଟ କଣରେ
ବେଳେ ବେଳେ ମାରୁଥିଲେ ଯା ଢ଼ଂକ ॥

*

ବନର ଆଲୁଅ ନଭି ନଭି ଆସେ
ଧୂପଗୁଇ ସଜ ଆସଇ ଘୋଟି
ଗୋଠରୁ ଫେରିଲେ ବେଲବୁଢ଼େ ଧେନୁ
ପୁଛ ତୋଳି ଧୀରେ ଗୋଟିକି ଗୋଟି ॥

ପଛରେ ଗଉଡ଼ ବଜାଏ ଧୁଡୁକା
ତାଳପତରର ଛତାକୁ ଟେକି
ଭଦଭଦଳିଆ ପକ୍ଷୀ ଶୋହେ ତହିଁ
ନୂଆ ଜାମୁଡାଳ ଖୋସିଛୁ ଦେଖି ॥

ଗୁହାଳୁ ଶୁଭଇ ବାଛୁରି ବାହୁନା
ଦୁଧୂଆଳୀ ଗାଈ ହୁଏ ଉଛନ
ଦକ୍ଷିଣା ପବନ ଆଣଇ ଉଡ଼ାଇ
ମଉଳିଲି ଫୁଲ ମହକ ଘନ ॥

ମଶାଣି ପଦାରେ ଫୁଟିଛୁ ଅରଖ
ଟିକି ଟିକି ତୂଳା ଅଧୀରେ ଉଡ଼େ
ବିଲୁଆ ନନାର ବୋବାଳି ଶୁଭୁଛୁ
ପଡ଼ିଗଲା ଅବା ବାଘ ହାବୁଡ଼େ !!

ସାହାମୁଂଡେ ଶୁଭେ ଦୋକାନ ଆଗରେ
ଆଖଡ଼ା-ପିଲାଂକ ପାଟି କୁହାଟ
ଶାସମାଏ ବସି ଲଗାଇଦେଲେଣି
ହରିବଂଶ ଅବା ମହାଭାରତ ।।

❋ ❋

ଆର ଗାଁ ଶେଷରେ ଦିଶୁଛୁ ଆଲୁଅ
କିଏସେ ବାଟୋଇ ଯାଉଛୁ କାହିଁ
ହାତେ ଲଣ୍ଠଣ ଦୁଲୁ ଦୁଲୁ ଜଳେ
ଜୁଳୁଜୁଳା ପୋକ ବୁଲୁଛୁ ଧାଇଁ ।।

ଜମିଦାର ଘର କଚେରୀ ପିଆଦା
ଆସୁଛୁ ଦେଖିଲେ ଲାଗେ ଛନକା
ପାଂଡ଼ିଆ ନଡ଼ିରେ ଶୋଇଲେଣି କୁଆ
ଆଦରିଲେଣି କେ ବନବନକା ❋ ।।

ଫଜବତୀ ଥୋଇ ଏରଂଡ଼ୀ ବଂଧରେ
ଘରର ଘରଣୀ ଗଲେଣି ଫେରି
ଚଉରା ମୂଳରେ କିଏ ବସି ଅବା
ଜପେ ହରିନାମ ମାଳାଟି ଧରି !

❋ ବନବନକା—ଲଟୀ ବିଶେଷ ।

ମେଘୁଆ ଫଜର ଆଡ଼ରୁଷା ଜହ୍ନ
ମଠେଇ ମଠେଇ ଆସୁଛି ଉଇଁ
ଦିନଟା ଯାକର ଖାଇ ଉପବାସ
ଉଠୁ ନାହିଁ ପାଦ ଛାଡ଼ି ତ ଭୂଇଁ ॥

ଉପାସଟା ଯଦି ନ ଥାଂତା ଓଷାରେ
ହୋଇଯାଉଥାଂତା କି ଅବା କ୍ଷତ,
ଅଳସେ ଅବଶ ସବୁ ଓପେଇଣି
ଶେକରେ ବକଳ ହାଲିଆ ଅତି ॥

ଅବଶ ବିବଶ ଶ୍ଳଥକେଶ ପାଶ
ଅଇଲେ ବାହୁଡ଼ି ସରବେ ଘରେ
ସାରା ଦିବସର କ୍ଳାଂତହାରଣୀ
ଶାଂତ ଦାୟିନୀ ନିଦ୍ରା କୋଳେ ॥

ମାଡ଼ିଆସେ ଧୀରେ ଛାଇଲଗା ନିଦ
ଡେଣାଟି ତାହାର ଅଲସେ ଝାଡ଼ି
ତରୀ ରାଇଜର ନିଦମଡ଼ା ଗୀତ
ଭାସିଆସେ ଚଢ଼ି ପବନ-ଗାଡ଼ି ॥

ସପନ ଦେଶର ପାହାଡ଼ ତଳର
ଝରଣା ସମ ଏ ଅଚେତ ଘୁମ୍
ଜହ୍ନ ଆଲୁଅରେ ମିଶିଯାଇ ହେଲେ
ବୋଲଯାଏ ତାର ଝୁମ୍ ଚୁମ୍ ॥

ନୂଆ ଓଦା ମାଟି ଉଆଏ କୁହୁକ
ସପନ ରସରେ ଜୁଆଇ ଧରା
ସେ ବାସେ ଲଗିଛି ନିଶା ଯାମିନୀକୁ
ଖାଲ୍, ବିଲ୍, ବଣ ନ ମାନେ ପରା !!

 

ନୂଆ ଯଉବନ ଯେ ନିଶା ଚଖାଇ
ବାଉଳ କଲା ଏ କୁଆଁରୀ ଚିତ
ସପନ ତାହାକୁ ଦୁଇ ଗୁଣ କଲା
ଶୁଣାଇ ତା ସବୁ-ପାସୋରା ଗୀତ ॥

ରଜବତୀ ଆଜ ମାଟିର ଧରଣୀ
କୁସୁମିତ ତାର ଅନୂଢ଼ା ପ୍ରାଣ
ରାତପିଂଧା ତାର ପାଲଟି କାଛେଣୀ
ଶୁଚି ହୋଇ ଅବା 'ପିଂଧିଛି ଆନ !!

ବରଷକେ ଥରେ ଦିନେ ଆସେ ଓଷା
ଯଉବନ ଆସେ ଜୀବନେ ଥରେ
ପୀରତିର ରସ ପରଶିଯାଏ ସେ
ଜୀବନ-ପାତ୍ରେ ମଉନେ ଝରେ ॥

ଯଉବନ-ଷୋଳେ ଡାକରା ଯାହାର
ଆସି ନାହିଁ ତାର ବିଫଳ ସବୁ
ଅଫୁଟା ତାହାର ହରଷ, ବେଦନା
ନିଜ ଛୁଏଁ ନିଜ ସମାଧି ଲଭୁ ॥

ଯଉବନ ଆଜ ଆସିଛି ଚକତେ
ନ ଆଣିଲା ପରି ସରଗ-ଶିରୀ
କୁଆଁରୀ-ଜୀବନ ଶେଷ ସୀମା ପାଟରେ
ପଦରେଖା ତାର ଫୁଟିଛି ଚିର ॥

ଯେ ଦିନଟି ଗଲା ହସି ଖେଳି ଆଜ
ଆସିବ କି ଆଉ କେବେ ତା ଫେର
କେତେ ସୁଖ, ଦୁଃଖ ଗୋପନେ ଲଭିଲି
ତାହାର ସାଥୀରେ ଗୋପନେ ଫେର ।।

ଆବର ଯେବେ ଗୋ ଆସିବ ଏ ଉଷା
ସେ ଦିନ ଥିବ କି ଆଜିର କଥା
ଜୀବନର ରଣେ କେତେ କି ଆଘାତ
ଘାଉବ ସେଦିନ ସକଳ ମଥା ।।

କ୍ଷଣିକ ସଂସାରେ କ୍ଷଣକ ପାଇଁକି
ଆସିଲା ଯା ଥରେ ନ ଆସେ ଆଉ
ଥରେ ଯା ଆସିଛି ଥରକ ପାଇଁକି,
ତା ପରେ ପଶ୍ଚରେ କିଏ ତା ଖାଉ ?

ଆଜି କଥା ପୁଣି ନାହିଁ ତ କାଲିକି
ଘଡ଼ିକୁ ଘଡ଼ିଏ ହେଉଛି ଆନ
ଜଗତ ବେଭାର ବୁଝିବା କଠିନ
ସବୁ ଯିବ ଚାଲି, ଜାଣ ନ ଜାଣ ।।

ଆଜିର ଏ ରଜ ନ ଆସୁ ପଛକେ
ଆଉ ଥରେ ଏହି ଧରଣୀ ପରେ
ଥରେ ତ ଆସିଛି, ରହିଥିବ ଲେଖା
ଚିରଦିନ ଏହା ମରମ ତଳେ ।।

ଭୁଇଁଦଳନର ନଣି ଖାଲପଟେ
ବଂକେଇ ଲଭେ ଦୁତୀୟା ଇଂଦୁ
କୁଳବଧୂ ଝୁରୁ ସୀମଂତେ ଅବା
ନଭେ ସିଂଦୂର କନକ ବିଂଦୁ ।।

ଡାକିଲଣି ନିଶା !! ଆଉ ତ ଘଡ଼ିଏ
ତା ପରେ ପାଇବ ଆଜିକର ଗତି
ଆସିଥିଲ ଥରେ ବରଷକେ ପରେ
ଲୁଚିଯିବ ପୁଣି ଏ ସଂକରାଂତି ॥ *



*'ପଲ୍ଲୀ ରଜ' ଖ୍ରୀ: ୧୯୩୪ରେ ରଚିତ ହୋଇଥିଲା ଓ ପ୍ରଥମେ ଏହାର କିୟଦଂଶ 'ରସଚକ୍ର'ରେ, ପରେ ପୂର୍ଣ୍ଣାଂଶରୂପେ ୧୩୪୩ ସାଲ ଜ୍ୟେଷ୍ଠ, ୪ର୍ଥ ଓ ୫ମ ସଂଖ୍ୟା 'ସହକାର'ରେ ପ୍ରକାଶ ପାଇଥିଲା···।

# ମାଲୁଣୀ

ଫୁଲ୍ କେ ନବ ଆସ ଫୁଲ୍
ନଗଦ କଉଡ଼ି ଆଗରୁ ଦିଅ ଗଣି କରିନ ଜମା ଅନୁକୂଳ ।
କାଢ଼ିଆ ଦେଇ ଦେଇ ବଢ଼ିଆ କରି ମଲି, ରଖିବ ଉପରୋଧ କେତେ
ନାଗୁଆ ଗରାହକ ବୋଲ୍ କି ମୁହଁମତ ? ଏଣେ ମୁଁ ହଇରାଣ ଏତେ !!

ନେହୁରା କଥା ଶୁଣି ଦିହକ ଗଲା ଗୁଲି ଡହକ ହେଲା ଖାଲି ସାର
ନୋହିଲେ ଉଆସର ପୋଇଲି ଗାଲେ ମୋର ଦିଅଂତା ଚୂନକଲା ଗୁର ?
କେତେ ସେ ଯୁଗ ଆଗେ କାଲିକା ପରି ଲାଗେ ଅଇଲେ କଳା
ଘୋଡ଼ା ଚଢ଼ି
ବାଟୋଇ ଦୁଇଜଣ କାହୁଁ ସେ ବାଟ ଭୁଲି କହିଲେ ପଦତଳେ ପଡ଼ି—

"ମାଉସି, ଘରେ ଥାନ ଦେଇ ତୁ ରଖ ମାନ କଉଡ଼ି ଦେବୁ ଯେତେ ମାଗୁ
ଜାଣିଲି ପଛେ ସିନା ରଜାର ପୁଅ ବୋଲି ଜାଣି କି ଥିଲି ତାହା ଆଗୁ ?
କାହିଁ ସେ କେତେ ଦୂର ମୁଲକ ମଣିପୁର ସେ ଦେଶେ ଘର ତାଂକମାନ
ଜଣେ ତ ରାଜସୁତ ଆରକ ତା ସଂଗାତ ମଂତ୍ରୀ କୁମର ସେ ଜାଣ ।।

କଉଡ଼ି ଲୋଭେ ଛୁଆ ପୋଷିଲି ସାପଛୁଆ ଆପଣା ଘରେ ଡାକିଆଣି,
ମୋ ବାନୁ ଆନ କିଏ ହୁଅଂତା କଲବଲ ନ ମଲି ଯାହା ଅଲକ୍ଷଣୀ !
ବରଷ ଗଲା ବିତ ରହିଲେ ଘରେ ମୋର ଘରର ପୁଅ ପରି ଦୁହେଁ,
ଫେରିବା କଥା ଦିନେ ଧରି ସେ ନାହାଂତି ତ ଦୁହିଁଙ୍କ ବୁଝେଁ
କେବେ ମୁହେଁ !!

ହୁଆସେ ରାଜଜେମା ହୁଅଇ ଫୁଲଲଗି ନଯୋଗେ ଥିଲି ତହିଁ ମୁହିଁ,
ଗୁଂଥି ନିତ୍ୟ ମାଳ ଖଟିବା କାମ ମୋର ଖଂଜାଥିଲା ଆଗୁ ଭୂଇଁ !!
କେବେ ବା କେତକୀରେ ଗୁଂଥି ଫୁଲ-ଝାମ୍ପ ସାଜେ ତା ମେରୁ ସମ ଗନ୍ଧ
କେବେ ବା ନୀଳକଇଁ ପାଖୁଡ଼ା ପରେ ଥୋଇ ସଜାଡ଼େ ଚିତା *
ମନଲୋଭା ।।

ନବୀନ ସହକାର ପତ୍ରେ କେବେ ହାର ରଚି ମୁଁ ଦିଏ ମନଲାଖି
ତାପରେ ଚଂପକ ଦିଶଇ ଜକଜକ ମହକ ମନେ ଦିଏ ମାଖି ।
ଲୋଧ୍ର ପରାଗରେ କେବେ ବା ସରାଗରେ ସଜାଡ଼ିଥାଏ ମୋର ଥାଳା
ବକୁଳ ମୁକୁଳରେ ଗୁଂଥେ ବଳୟରେ ସରାଗେ ଯେନେ ରାଜବାଳା ।।

କେବେ ବା ଅତସୀର କୋରକେ ରଚି ତୋଡ଼ା ଯୋଗାଏ
ଜେମାମଣି ପାଶେ
ଘଟଣେ ତାହା ଶୋହେ ଲେଖଇ ବାଳା ଦିଏ ମେଘୁଆ ଶାଢ଼ୀ ଦରହାସେ
ବନ୍ୟ ତୁଳସୀରେ ସଜାଡ଼ି ଜୁଡ଼ା ଫେରେ,କେବେ ବା ଯୂଥୀଘନ କେଶେ,
ଆମ୍ର ମଂଜରୀ କେବେ ବା ନାଏ ଗୋଷ୍ଠି ଆପଣା ଛୁଏଁ ନବବେଶେ ।। ·

ସର୍ପ ସମ ବେଣୀ ମଂଡେ କେବେ ଆଣି ଯତନେ କୁରୁବକ କଳି
ନୂତନ କାମିନୀରେ † କେବେ ବା ଭ୍ରମିନୀରେ ସଜାଏ ସୁଖେ ଭଳି ଭଳି ।
ସେଦିନ କଳାମେଘୀ ମିଳେ ମୁଁ ହତଭାଗୀ ତୁଚ୍ଛା ମୋ ପାଛୁଆଟି ଭରି
ଫେରଇ ପୁରେ ସୁଖେ ଅଧୀର ଉନ୍‌ମୁଖେ ଏସନ ଦିନ ଯାଏ ଚଳି ।।

---

* କପାଳର ଅଳଂକାରବିଶେଷ ।
† ଫୁଲ ବିଶେଷ ।

ଅନେକ ରଜାପୁଅ କହିଲ, "ମାଉସି ମ, ଗୁଂଥି ଦେବ ଆଜ ମାଳା
ଯୂଥିକା କଳିକାରେ ରଚିବ ମାଳିକାରେ ରସିବ ଦେଖି ରାଜବାଳା ।
କେମାଠୁଁ ସୁନାହାର ପାଇବୁ ପୁରସ୍କାର ବଦଳେ ଫୁଲମାଳ ଦେଇ"
ହୋଇଲ ସନମତ ଦେଲ ସେ ହାର ସତ କେମାକୁ ଭେଟିଲ ତା ନେଇ ॥

କି ଲିପି ଲେଖିଥିଲା ମଧ୍ୟ-ସ୍ତବକରେ ଚଂପାଦଳେ ତାକୁ ଜଣା
ମୁଁ କାହୁଁ ଜାଣିବ ତା ଏତେକ କୂଟ ଥିଲା ଆଖି ମୋ ଥାଉ ଥାଉ କଣା ।
ତା ପଢ଼ି ରାଜକେମା ଅଳପ ହସି ଏ ମା ପୁଛିଲା ତହୁଁ କରି ରୋଷ,
ଫୁଲାଇ ନାସାପୁଟ, "କହ ତୁ କହ ସତ କରିଛୁ କିଏ ତୋତେ ବଶ ?

ନିଲଜୀ ପୋଡ଼ାମୁହାଁ କାହାର ଦୂତହୋଇ ସାହସ କଲୁ ତୁ କି ଏଡ଼େ
ନିଲଠାପଣ ତୋର ଭାଜିବ ଏଥର ଦେଖ ମୋ ପରତାପ କେଡ଼େ !"
ଏତେକ ଭଷି ସେହୁ ହକାରି ଦାସୀ ତହୁଁ କହିଲ, "ମୁଖେ ବୋଳି ଚୂନ
ଲେପିବୁ ଚିନ ଗାର କଳା ତୁ ଏହା ଗାଲ ବସାଇ ଦଶ ବେତ ପୁଣ ॥

କରିବୁ ବେଗେ ବିଦା ହେଉ ତା ପିଠି ସିଧା ପଳାଉ ନଅରରୁ ଏଥୁ ।"
ଦାସୀଠୁଁ ମାଡ଼ ଖାଇ ଅଇଲ ଧାଇଁ ଧାଇଁ କରମେ ଥିଲେ ଏହା ସହୁ !
କହିଲ, "ହେ ବିଦେଶି ! କଉଡ଼ି ହେଲ ବେଶି
ଯାଅ ମୋ ଘରୁ ତମେ ଆଜ
ତମରି ଯୋଗୁଁ ସିନା ହୋଇଲି ହୀନମାନ, ପିଠିର ହାଡ଼ ଗଲା ଭାଜି ॥"

ତା ଶୁଣି ରଜାପୁଅ ଶୁଖାଇ କହେ ମୁହଁ, "ହେ ସଖା ଗଲା ଯିବା ଗଲା
ନ ହେଲା ଯେବେ ମେନା ମୋ ଲିପି ତେବେ ସିନା ଝାସିବି
ଏ ଜୀବନ କାଳି ।"
ହସିଲା ଶୁଣି ତାହା ଚତୁର ସଙ୍ଗାତ ତା କହିଲା କରି ତାକୁ ବୋଧ,
"ଦେଇଛୁ ସଙ୍କେତ ସଫଳ ମନୋରଥ ନ କର ମନେ ତିଳେ କ୍ରୋଧ ॥

ତା ଗାଲେ କଳା ବୋଲି କହିଛି ହେମ ଗୋଷ୍ଠୀ କୃଷ୍ଣପକ୍ଷ ଯେବେ  ହେବ
ଗୋପନ ଅଭିସାରେ ଚଳିବ ଟେବେ ଧୀରେ,
ତେବେ ସେ ନିଧୁବନ ଦେବ ।
ନରୁବା  ନଅରର କଡ଼ା ସେ ଜଗୁଆଳି ହାତରେ ପଡ଼ିବଟି ଧରା
ମାଲୁଣୀ ବୁଢ଼ୀ ପର ବସିବ ବେତ ନୋଳି ନାଗରପଣ ହେବ ମାରା ।।

ପିଠିରେ ଦଶ ବେତ  ବଜାଇ କହିଛି ତ ଦଶମୀ ତିଥି ଦେଖି ସିବ
ସେଦିନ ଦଶହରା ଉଛନେ ମଉଆରା ଅଂତପୁରେ କେ ନ ଥିବ ।
ମୁହଁରେ ଚନଗାର ବୋଲି ସେ କଳା ଜାଣ କହିଛି କରି ବାମା ଛଳ
ତାମସୀ ଯାମିନର ତୃତୀୟ ପ୍ରହରର ଅଂତେ ବଜେକଲେ ଭଲ ।।

ନଥିବେ ପୁରଜନ ଉଆସ ଶୂନଶାନ ମିଳନ ହେବ ବାଧାହୀନ
ଏସନ ସଂକେତ ଦେଇଛି ସଂଗୀତ ମନରୁ କର ଦୁଃଖ ଲୀନ ।''
ଏ ଶୁଣି ରାଜସୁତ ହୋଇଲା ହରଷିତ ଗଳାରୁ କାଢ଼ି ସୁନାହାର
ଦେଲା ସେ ମୋତେ ଆଣି କହିଲା, ''ହୁଅ ତୁମୀ ଋଣଟି ତୋତେ ସାତବାର ।।

ପୁନଅ ଗଲା ଆସି ନଭିଲା ଧୀରେ ଶଶୀ ହୋଇଲା ତମୋମୟୀ ରାତି
ନବମୀ ଗୃହୁଁ ଗୃହୁଁ ଲୁଚିଲା ଆସି କାହୁଁ ଉଛନ ହେଲା ଯୁବା ଗ୍ରତି ।
ଦଶମୀ ଦିନ ମୋରେ ପାଶକୁ ରାଇ ବାରେ କହିଲା ଯୁବାମଣି ସତେ,
''ମିନତି ଏକ ମମ ରଖିବୁ ମାଉସି ମ କନକ ମୁଦି ଦେଲି ତୋତେ ।।

ଆଜିକ ଗୁଂଥିବ କୁସୁମ ମାଳିକା ମୁଁ, ତୁ ଦେବୁ ତାହା ଜେମା କରେ ।''
ତା କଥା ମୁହିଁ ଶୁଣି କାମୁନ୍ତି ଜିଭ ଭଣି ''ସେ କଥା କହନା ତୁ ମୋରେ,
ସେ ଦିନ ଅନୁଭବ ନଭିନ ମନୁ ଲବ  ସୁମରି କୋହ ଉଠେ ପ୍ରାଣେ
ଏଥର ମଥା ମୋର ଛିଡ଼ିବ ଭୂଇଁତଳ କେଜାଣି ରଜା ଯଦି ଜାଣେ ।।

ବସାଇ ଶୂଳ ପରେ ନାଶିବ ଜୀବନରେ ଲୋଡ଼ା ମୋ ନାହିଁ ଲୋ ମା
କସ
ରଖ ତୋ ସୁନାମୁଦ୍ର କାହିଁକି କେତେ ଫନ୍ଦ ଲଗୁଛୁ କଥା ତୋର ବଷ ।"
ମାତର ନ ଛାଡ଼ିଲା ପଣତ ମୋ ଭିଡ଼ିଲା କହିଲା ଦେଇ ସାତରଣ,
ନେହୁର ଭାଷା ଶୁଣି ଗଲା ମୁଁ ଗଲା ଭୁଲି କହିଲି, "ହେଉ ତେବେ ଆଣ

ସ୍ୱର୍ଣ୍ଣମୁଦ୍ର ତୋର, କପର ମୁଁ ନଅର ଶୂନ୍ୟ ଆଂଗୁଠିରେ ଯିବ
କହିଲୁ ଯେତେବେଳେ ଧର ତୁ ଏତେ ଆଲେ କଥା ତୋ ମୁହିଁ ରଖିଥିବ
ଦେଲା ସେ ରଚ ହାର ଶ୍ୱେତ ଶତଦଳ କୋରକେ ଉଠିଲା ତା ଝଳ,
ଗଂଧେ ତାର ଲୋଭି ଅଇଲେ ମଧୁଲୋଭି ଲକ୍ଷ ପଥହୁଡ଼ା ଅଳି ॥

ଲେଖିଲା କସ ଭାଷା ଜାଣେ ସେ ଚୁଳିପଶା ତା ମଧ୍ୟେ ଗୁପତରେ ସେତୁ
ବୁଝିବ କସ ମୁହିଁ ପଢ଼ିଛୁ କ ମୁଁ ବନ୍ଧ ସେ ହାର ଦେଲି ନେଇ ତହୁଁ ।
ପଢ଼ି ତା ସ୍ନେହଭରେ ଭାଷିଲା କେମା ମୋରେ, "ବଢ଼ାଇ ଏଡ଼େ
ତୋର ଆଲୋ
ପୁଣି କ ସାହସରେ ଅଇଲୁ ମୋ ପାଶରେ ପୋଡ଼ିଲା ଏଥର ତୋ ଭାଲ ॥"

ଗର୍ଗରେ ଫୁଲ ଭରି ଦାସୀକୁ ଦେଲା ଠାର ଦେଖିନ ଆଉ ମୁହିଁ ଗାଣ
ହେଂଗୁ ଅଳତାରେ ଗୋଳି ସେ ଢନଗାରେ ବସନେ ଦେଲା
ମୋର ଦାଗ ।
ଢାପରେ ମୋତେ ଧର ତଆଇଁ ସେ ପାଚୀର ଫୋପାଡ଼ିଦେଲା
ବାଡ଼ିଆଡ଼େ
ଛୁଡ଼ିଲା ବଳାଗଂଠି ଦରଜ ହେଲା ତଂଟି ଚଗଲା ଲୁଗା କଂଟାବାଡ଼େ ॥

ଜୀବନ ଯାଇଥାଂତା ରଖିଲେ ସିନା ଧାତା ଅଇଲି ଦରମଲା ମୁହିଁ,
କର ମୁଁ ଗରଜନ କହିଲି, "ଅଭାଜନ ନକଲି ଘରୁ ମୋର ବୁହି ।
ତୋ ଲାଗି ମରଥିଲି ଆଇଷ ଥିଲା ବୋଲି ବଂଚଗଲି ସିନା ଆଜ,
ବାହାର ଘରୁ ମୋର ନୋହିଲେ ଝାଡ଼ୁମାଡ଼, ପିଠିର ହାଡ଼ ଯିବ ଭାଜ ॥

ମୋଠାରୁ ସବୁ ଶୁଣି ମହଲେ ଯୁବାମଣି ଦୁଃଖେ କରେ ହାଇ ହାଇ
ହକାର ସହଚରେ କହିଲ ଦୁଃଖଭରେ ଆଉ କି ଲାଭ ଏଥି ଥାଇ ?
କେତେ ମୁଁ ଆଶା କରି ମିଳନ ମାଗିଥିଲି ସବୁ ତ ଅକାରଣ ହେଲା
ନାହିଁ ମୋ ଲୋଡ଼ା ଆଉ ଜୀବନ ଆଜ ଯାଉ ବୁଡ଼ିଲା ଯେବେ ଆଶା-
ଭେଳା ।।"

ମାତର ସାଥୀ ତାର ମଂତ୍ରୀକୁମର ସବୁ ସେ ନଷ୍ଟକୂଟ ଜାଣେ
ହସରେ ଗଡ଼ି ତଳ କହିଲା, "ଏହି ଥର ସଫଳ ହେଲା ଆଶା ପ୍ରାଣେ ।
ହେଂଗୁ ଅଲତାରେ ଦେଇ ସେ ଢନଗାରେ କହିଛି ସୂଚନାରେ ଜେମା
ଏବେ ସେ ରଜବତୀ ବଢଲେ ଘନ ରାତି ଭେଟିବ ନଅରରେ ବାମା ।।

ଡିଆଁଇ ବାଡ଼ି ପଟ ପାଚୀରି କହିଛି ସେ ଆସିବ ଏହିପରି କ୍ରମେ
ନଅର ଆଗୁଳିଛି ସିପାହୀ ଆଗପଟୁ ନୁହେ ସେ ନିରାପଦ ଯାମେ,
ଉଆସ ପଛ ପଟେ ଅର୍ଦ୍ଧ ନିଶାଗତେ ପ୍ରବେଶ, ନ କରି ହେ ଭୟ ।
ଭରସା ଅଛି ମନେ ହୋଇବ ଏତେଦିନେ ପୀରତି ଦେବତାର ଜୟ ।"

କି ଯାଦୁ ଜାଣେ ସେହି ଜାଣେ ତ ନାହିଁ କେହି ଭୁଲିଲା ରାଜାପୁଅ
ହା'ରେ
ହାତରୁ ସୁନା ଖଡ଼୍ଗ ଉତାରି ଦେଲା ମୋତେ କହିଲା, କ୍ଷମ ଏହି ବାରେ ।।

* * * *

ହୋଇଲା ତ୍ରୟୋଦଶୀ ନିଜନ ତମ ନିଶି ଝପଟେ ନିଦ ଗଲା ରାଜା
ତଉଡ଼ି ଦୀପ ଧରି ଶୟନ ଘରେ ମିଳି ଦେଖିଲା କେହି ନାହିଁ ଆଜ୍ଞା ।
ଭାବିଲା କିସ ହେଲା ବିଦେଶୀ କେଣେ ଗଲା ଗୁହାଲେ ଦେଖେ ନାହିଁ
ଘୋଡ଼ା
ମନଟା ଧୂକୁଧୂକୁ କରତହେଲା ବୁକୁ ବାଙ୍କ ଯେ କିଛି ଥିଲା ଭଡ଼ା ।।

ସକାଳୁ ହେଲା ହୁରି ଅଂତପୁର ଖାଲି ନାହାଂତି କେମାଦେଇ ପୁରେ
ପଠାଇ ଦୂତ ରାଜା ଖୋଜିଲେ ଚଉବାହି ବକଲେ ନକଟେ ଓ ଦୂରେ ।
ମାତର ଅକାରଣ ନ ମିଳେ ସଂଧାନ ଉଭେଇଗଲେ ଅବା କାହିଁ
ଉତ୍ତରେ ଯିବା ଚର ଆଣିଲା ସମାଚାର କହଇ କହୁଁଆଲେ ଗୁହି—

"ଯୋଜନ ଶତ ଦୂରେ ରାଇଜ ମଣିପୁରେ ଶୁଣିଲି ପଡ଼ିଅଛି ହଟା
ସେ ଦେଶ ଜେନାମଣି ଆଣିଛି ଯୁବରାଣୀ କେଉଁଠୁ ମିଳୁନାହିଁ ପତ୍ତା ।"
ଶୁଣିଲି ସବୁକଥା ମଲି କି ହଟହଟା ମଥା ମୁଁ ପୋତଦେଲି ତଳେ
ସରମ କଥା ମାଗୋ କହିବ କାହା ଆଗ ବତୁରେ ଆଖିପତା ଜଳେ !!

କେମାଂକୁ ନେଲା ଚୋର କେ ନେବ ମାଳା ମୋର ପସରା ଭୁଞ୍ଜିଲା ମୋ
ସିନା
ମରମ ଦୁଃଖ ମୋର ମରମ ତଳେ ମଲି ଦୁଃଖେ ହେଲି ମୁହିଁ କ୍ଷୀଣା ।
ନେହୁରା କଥା ଶୁଣି, ଦହକ ଗଲା ଗୁଲି ଦହକ ହେଲା ଖାଲି ସାର
ନୋହିଲେ କାନମୋଡ଼ା ଦଅଂତା ରଜାଘର ପୋଇଲୀ ଏକ ମୋତେ
ଗ୍ଣର !! *



* ଏ କବିତାଟି ୧୩୪୩ ସାଲ ସପ୍ତମ ସଂଖ୍ୟା 'ସହକାର'ରେ ପ୍ରକାଶିତ ହୋଇଥିଲା ।

# ଶିବ-ପୂଜା

[ ଏକ ]

ଫଗୁଣ ଅମା-ନିଶା          ପବନେ ଶୀତ ମିଶା
ଆଜି ଜାଗର,
ଗୋଟିକ ଗୋଟି ବାଲା          ପ୍ରଦୀପେ ଭରି ଥାଲା
ହେଲେ ହାଜର ॥

କିଏ ସେ ବକୁଳରେ          ଗୁଂଥିଅଛୁ ଭଲେ
ଆପଣା ମାଲା,
କେ ପୁଣି ହରଦ୍ୱାରେ          ସାଜିଛୁ ଆପଣାରେ
କଳା-କୁଶଳା !!

କିଏ ସେ କରବୀରେ          ସାଜିଛୁ କବରୀରେ,
ନୀଳ ଅଂଚଳ
ଫୁଟାଇ କାର ଉରୁ          ଧଣଇ ବଜ୍ର ଗୁରୁ
ପୁଣି ଚଂଚଳ···॥

ନରକ ଦେଶ କେନ୍ଦ୍ର          ସ୍ୱରଗଦ୍ୱାର ଦେଇ
ଅଛୁ ପଶୁଇ—
ହରଜ. ମୁନ କାର          ବାଣୁଆ ସମ ମାର
ଦେଲ ପକାଇ !!

ଲୋହିତ ଓଠ ତଳେ     କାହାର ହାସ ଝରେ
କେ ଗାଏ ଗାନ,
କଏ ସେ ଦୀପ ଜାଳି     ବରଷେ ହସେ ଘାଣ
ଚମକେ ପ୍ରାଣ ।।

କୋମଳ ପଥ ଘାସ     କା' ପଦେ ହଏ ପ୍ରାସ
କେ ଚଳେ ଧୀରେ,
ଦରଜ ହୁଏ ପାଦ     କଂଟା ସାଧେ ବାଦ
ଶୋଣିତ ନୀରେ···।।

କେ ଗୋଲା ହରିତାଳେ     ଜୁଆଇ ଅଛୁ ତାରେ,
କେ ଗୋରଚନା
ନାଇଚ କପାଳରେ,     ଶୋହେ କଜଳ ଗାରେ
କେ ସୁଲୋଚନା !!

ଶିମିଳି ତୁଳା ପରି     କାହାର ସୁନା ଶିସା
ପଡ଼େ ଝାଉଁଳି,
କଅଁଳ ଘାସ ବାଜି     କେ ଖୁରୁ ପଡ଼େ ଭାଜି
ଯଥା ଶିଉଳି !!

ନୂତନ ଯୂଥିକାରେ     କେ ବେଣୀ-ବୀଥିକାରେ
ଅଛୁ ବା ସାଜ ।
କାହାର ନୀଳ ଗଣ୍ଡ     ଉପରେ ଫୁଲ୍-ସଜ
ବସିଚ ଆଜ !!

ମେଘୁଆ ଶାଢ଼ୀ ପରେ     ବିଜୁଳି ପରି ଖେଳେ
କା ଦେହ-ଲତା ।
ଭୁଜଂଗ ପରି ଚଳେ     ଗୁପତେ ବେଳେ ବେଳେ
କାହା ଭ୍ରୂଲତା !!

ପବନେ କାହ୍ନା ବାସ ଉଡ଼ାଇ, ଲଗେ ହାସ
ସଜନୀ ମେଳେ ।
ଝୁଂଟିପଡ଼େ ତଳେ କହଇ ସଖୀ ଛଳେ
ତାହାଙ୍କୁ ଗେଲେ···॥

‘‘କଏ ମ ପନ୍ଥ ଚୋଟେ ପକାଏ ମନେ ଏତେ
ଆଜି ଲେ ଦୂରେ ?’’
କେ କହେ, ‘‘ମଲୁ ମୋର କଥା ଲେ ତର ତର
କଏ ସେ ଝୁରେ ?’’

କେ କହେ, ‘‘ବଉଲ ମ ଢଅନ ଖଂଡେ ପାନ
ଭଲ ଜଂକାଲ
ସଖୀଙ୍କୁ ତର ନାହିଁ ଭାଂଗି ଖାଇବା ପାଇଁ
ନ ହେଲା କାଳ ॥’’

ଆନ କେ ରୂପମସ୍ଥୀ ଶରମେ ମୁହ ନୋଇଁ
ଗୁଲଇ ବାଟ,
ଓଢ଼ଣୀ ତଳେ ତାର ଝରଇ ଶ୍ରମ-ଝାଳ
ଦେହର ପାଟ—

ପବନେ ଲେଟେ ତଳେ ଝାଡ଼ି ସେ ଧୂଳି ଉଠେ
ଧରଇ ହାଟେ,
‘‘ମଲୁ ଏ ପବନଟା କରଇ ହଟହଣ
ଲଗି ମୋ ସାଥେ ॥’’

କାହିଁ ବା କେ କିଶୋରୀ କହଇ ଧୀରେ ଗୋଷ୍ଠୀ,
‘‘ଶୁଣ ଗୋ ମିତ
ଆଜି ଏ ଜଳାଗର କାହିଁକି କହ ତୋର
ନାଚୁଛୁ ଚକ୍ଷୁ ?’’

କଏ ସେ ମଂଦ ହସି କହଇ, "ଆଆ ବସି
ଯାଉଚ ଆଗେ,"
କହେ କେ ଆଖି ଠାରି, "କା ପ୍ରେମେ ହୋଇ ଘାରି
ନ ନେଉ ସାଂଗେ ?

ଗଲେ କି ଆମେ ସାଥେ ଛଡ଼ାଇନେବୁଁ ହାତେ
ତୋହର ଧନ ?
ଏଡ଼େ ରୁ ଚତୁରୀ ଲୋ କଥାଟି କହୁ ଭଲ
ପୋଡ଼ୁ ତୋ ମନ ॥"

କଏ ସେ କହେ ଅଉ ମୁହଁକୁ ଆଡ଼ କରି
ଅଳପ ଲାଜେ,
"କାହିଁକି ମଠ ଆଉ ନ ଯିବ ଯେବେ ଆଉ
ଚରଣ ଲାଜେ ॥"

ସଂଗିନୀ କହେ ଠାରି, "ଏଡ଼େ ରୁ ସୁକୁମାରୀ
ଏତିକ ଗୁଲ
ଚରଣ ପଡ଼େ ଥକି କଅଁଳା ପିଲା ନାକି
ରାଜକୁମାରୀ !!"

* * * *

କହଇ ଚଂପାବୋଉ, "ଦେଖ ମ ନୂଆବୋହୂ,
ଟୋକାଂକ ରଂଗ ।
ଛଟୁଲା ନଈ ପରି ହୁଅଂତି ଏତେ ସରି
ଦେଖିନ ଢଂଗ ।"

ଏ କାଳେ ରଂକମାଆ କହଇ, "ଉଠ ମ, ଆ—
କେତେ ଲୋପରା
ହଉଥା ତେମେ ସତେ ଲାଗେ ନା ଭଲ ମତେ
ରଖ ଖାପରା ।

ଆମେ ତ ଦିନେ ପୁଣି ଥିଲୁ ଲୋ ଭୁଆସୁଣୀ
ମାତର କଏ
କହୁ ତ ଯେବେ ତାର ଜିଭରେ ଅଛୁ ହାଡ଼
ଦେଖିଛୁ ପିଏ—

ଏ ପଖା ସ୍ନାନପଣ ନ ମାନ ଗୁରୁଜନ
ଆମର କେବେ ?
ଏ କାଳେ ମାଇକନା ଏପରି ହେଲେ ପିନା
ନ ଥିଲା ସେବେ ।"

ପଧାନଘର ବୁଢ଼ୀ କହଇ, "ଶୁଣ ଖୁଡ଼ୀ"
ଗଡ଼ାଇ ମାଳି
"ତା ନାଆଁ ଆସୁ ନାହିଁ କେଳୁଆ ସାହୁ ଝିଅ
କହିଲା କାଲି—

ସନିଆ ତେଲି ବୋହୂ— ନାହିଁ ଲୋ ମାଆ ଥାଉ
ଲାଗୁଚି ଡର !
କହୁଚ ବିଶ୍ୱାସରେ କହିବ ନାହିଁ କାରେ
ଶାସିବେ ହର ॥"

ଏପରି କେତେ କଥା ରଖିଚ କେ ବାରତା
ସେ ନାଗ-ସଭା
ଚାଲଇ ଗ୍ରାମ ବାଂଟେ ଉଛୁଳି ଉଠେ ଗୁଂଠେ
କନକ-ଶୋଭା ।

ପବନେ ଫୁରୁ ଫୁରୁ ସେଫାଳି ବଣୁ ଦୁରୁ
ମହକ ମିଶେ
ଆମ୍ରବନ ଶିରେ ଖଚୁଆ ତଗ ଧୀରେ
ମୁଚୁକି ହସେ ॥

ବଉଳ ବାସନାରେ ଲାଗଇ ନିଶା ଖରେ
ଅଂଧାର ତେଣୁ
ଶୋଇଛ ଅଚେତାରେ, ସମୀର ତା କାନରେ
ବଜାଏ ବେଣୁ ॥

* * * *

[ଦୁଇ]

ଗ୍ରାମର ପଥ ଶେଷେ ଶୋଇଛ ବରବେଶେ
ଶିବ ଦେଉଳ
ବୃଷଭ ଆଗେ ଉଭା ନୟନ କରେ ଲୋଭା
ଚଂପା, ବଉଳ ॥

ମିଳିଲେ ଯେତେ ନାରୀ ଜାଗର ଦୀପ ଜାଳି
ଅଗଣା ତଳେ
ନୃତ୍ୟୁରୀ ଦେଉଳଟା ଦେଖାଏ କେତେ ଛଟା
ଆଜି ଗୋ ଭଲେ ॥

ରମଣୀ ପଦ ବାଜି ପଡ଼ଇ ଆଜି ଭାଜି
ଭଂଗା ମଂଦର
ନୂପୁର ରୁଣୁଝୁଣୁ ଥରଇ କାର ତନୁ
ଲାଜେ ଅଧୀର ॥

କଏସେ ନମସ୍କାର କରଇ କୋଟି ଥର
ଲୋଟେ କବରୀ,
କଏ ବା ଦୂରୁ ଗୃହି ଅଳସେ ମାରେ ହାଇ
ଛଣକେ ଅଣ୍ଡ ॥

କେ ନାରୀ ଢଳେ ଶିର ନୂଆଇଁ ଢାଳେ ନୀର
କହଇ ସେ ଯେ,
"ଫେରଇ ତାଂକୁ ଆଣ କରଇ ମୁଁ ଜଣାଣ
ବିଦେଶୁଁ ବେଗେ ॥

ନାଥ ମୁ ନାଗକେଲେ କରିବ ପୂଜା ଦୋଳେ
ଶ୍ରୀଅଂଗ-ଲଗି
ସାଜିବ ବେଲ ଫୁଲେ ✻ ପଠ ମୋ ବନ୍ଧୁଦୂରେ
ଏତକ ମାଗି ।"

କେ କହେ, "ହେ ଦେବତା, ମାଗେ ମୁଁ ଏଇକଥା
ଦିଅ ନାଗର ।
ନାଥ ମୁଁ ଫଗୁଣରେ ପୂଜିବ ଚରଣରେ
ଜାଳି ଜାଗର ॥"

କିଏ ସେ ମାଗେ ବର, "ବେମାର ମୋ ପୁଅର
କର ଗୋ ଭଲ,
ଶୁକଳ ଏକାଦଶୀ ଦିନ ମୁଁ ନାଥ ଆସି
ଢାଳିବ ଜଳ ॥"

କହଇ କେ କୁମାରୀ, "ତାଂକର ସଂଗେ ଝାଲି
କରିଅ ଦେଖା ।
ନାଥ ମୁଁ ଭକତରେ ପୂଜିବ ଶ୍ରୀପଦ୍ମରେ
ତୁମର ଏକା ।"

---

✻ ବେଲଫୁଲ—ମହାଦେବଂକ ସେବାରେ ଦିଆଯାଉଥିବା ବେଲ-ପତ୍ର ଓ ବେଲଗଛର ଫୁଲ । ପୂର୍ବେ କେହି କେହି ପଂଡିତମ୍ମନ୍ୟ ବ୍ୟକ୍ତି ଏହାକୁ ବଂଗଳା 'ବେଲ୍ ଫୁଲ୍'ର (ମଲ୍ଲିଫୁଲ) ଅନୁକରଣ ବୋଲି ଭୁଲ ବୁଝିଥିବାରୁ ଏଠାରେ ସେ ସଂଦେହ ଦୂର କଲି !— ଲେଖକ ।

ମାଗଇ କେ ଷୋଡ଼ଶୀ ଅଳସେ ହସି ହସି
ଆଗୋ ଦେବତା,
"ମୋ ମନ ଲକ୍ଷି ବର ଦିଅ ହେ ମତେ ବର
ହର ମୋ ବ୍ୟଥା ।।"

କେ ବାଲା ଆଖି ନୋଇଁ ଅଧୀରେ ଉଠେ କହି,
"ହେ ମହାଦେବ,
ହଁ ଫୁଲ ଶେଯ ମୋର ଲୋତକେ ଜର ଜର
କି ବର ଦେବ ?

ମାଗିବ କି ଯେ ମୁଁ ବା ଦିଅ ଗୋ ନବଯୁବା
ପରଶ-ସାଥି,
ମରମ ତଳ ମୋର ଯାଏ ଗୋ ଅବିରଳ
ବ୍ୟଥାରେ ଫାଟି ।।"

ବର୍ଷୀୟସୀ କଏ ପ୍ରୌଢ଼ା କହେ କୋହେ,
"ରେଂଗାମ ଗଲେ,
କଉଡ଼ି ପୋଡ଼ିଯାଉ, ପ୍ରଭୁ ପୁନଏ ସେଥୁ
ଖଣ୍ଡା ନ ଦେଲେ ।।

କଏ ସେ କଲା କଡ଼ି କପାଳ ଗଲା ପୋଡ଼ି
କରିବି କିସ ?
କାଚ ସିଂଦୂର ନାଇ ବିଧବା ହେଲି ମୁହିଁ
ଜୀଇବା ବିଷ !

ଫେରାଇ ତାଂକୁ ଆଣ କରୁଛି ମୁଁ କଣାଣ
ରୂପାର ନାଗ
ଗଢ଼ାଇ ଦେବି ହଳେ ଗୁହାରି ଶୁଣ ଅରେ
ନ କର ରାଗ ।।"

ଏପରି କଏ କେତେ ମାଗନ୍ତି ନାନାମତେ
ଦେବତା-ପଦେ
ସବୁରିକୁ ବ୍ୟଥା ଝୁରନ୍ତି କହି କଥା
ଏକଇ ଛନ୍ଦେ ।

ପାଷାଣ ଶିବ ପ୍ରାଣେ ବାଜଇ ଏକତାନେ
ବୁକୁର ଲୁହ,
ବିଫଳ କେତେ ଆଶା ଲଭଇ ଆଜି ଭାଷା,
କଥାର ସୁଅ !!

ମହାନ ଏ ଦେବତା ଆଜି ଗୋ କହେ କଥା
ମାନବ ଲୁହେ,
ମଳିନ ଆଖି ଜଳ ନିରଣ ବୁକୁ ତଳ
ନିମିଷେ ଧୁଏ ॥

ସଳିତା ଗଲା ଜଳି ନିଭିଲା ଦୀପ ଥରି
ପାହିଲା ରାତି,
ଫେରିଲେ ଯେତେ ନାରୀ ଅଳସେ ଆଖି ଝାରି
ପୁଲକେ ମାତି ॥

ନୂପୁର ବାଜେ ପଥେ ହଲଇ ସ୍ୱର୍ଣ୍ଣ-ନୋଥେ
ପଣ୍ଟରେ ନାରୀ,
"ମାଗିଲ କେଉଁ ବର କହନି ଗଂଗାଜଳ !
କପଟ ଛାଡ଼ି ॥"

କହଇ ସେ ତରୁଣୀ, "କି ଲଭ ତୁମେ ଶୁଣି
ପାରେ ନା କହି ।"
କହିଲା ଆଉ ଜଣେ, "ମାଗିଛି ସେ ଗୋପନେ
ତୋ ବର ସହି !!"

ଉଠିଲା ପୁଣି ହସ ବଦନ ତାମରସ
ଥରିଲା ଧୀରେ
ଶରତ କହି ପର ପବନେ ଥରି ଥରି
ସରସୀ-ତୀରେ ॥

ଏକର କଥା ଆନ ପରାଣ ତୋଳେ ତାନ,
ଏକଇ ବ୍ୟଥା—
ସଜଳ କରେ ବେଗେ ବରଷା ଯଥା ମେଘେ
ଅପର ପଥା ॥

ଅଲିଭା ସେ ଜାଗର ବ୍ୟଥାରେ ଛଳ ଛଳ
ନାହିଁ ତା ଶେଷ,
ପାଷାଣ-ସିଂହାସନେ ଟାଳିବ ସେ ଗୋପନେ
ଚିର ଅଶେଷ !! *



* ୧୯୩୬ ସାଲରେ ରଚିତ ଓ ସେହି ବର୍ଷ 'ପଲ୍ଲୀମଂଗଳ'ର ଶ୍ରାବଣ ସଂଖ୍ୟାରେ ପ୍ରଥମେ ପ୍ରକାଶିତ ହୋଇଥିଲା ।

# ମୁଁ ତ ଭ୍ରଥ ନାହାକ ଝିଅ

ମୁଁ ତ ଭ୍ରଥ ନାହାକ ଝିଅ ।
ମୋତେ ନଜାଣେ କିଏ ସେ କୁହ !
ବାପ ମୋ ଗାଆଁର ବଡ଼ ମକଦ୍ଦମ
ଗୁଣ ଗାଇ ଅଖା ଧୂଅ ।
ଗୁହାଳେ ଆମର ଠନ ହଳ ହଡ଼ା
ବାଡ଼ପଟେ ନଂଦ କୂଅ ।
ହେଁ, ହେଁ, ମେତେ ନଚିହ୍ନିଚ କିଏ କୁହ ।।

କନିଆଁ ଦେଖାଣି ଆର ଗାଁ ପାଟ-
ସାହାଣୀ ମଟିଆ ପୁଅ
କହିଗଲା କି ନା ସର ହେଲେ ହବ
ହାଂଡଶାଳ ଘର ରୁଅ "!

ବାହାଡ଼ା ଦାଁତର ଓଢ଼ଣା ତଳୁ ମୁଁ
ଘିଂଗ ଦେଇଥାଂଉ ମୁହଁ !
ଦୋଭେଇ ବରକୁ ମିଳିବ କେଉଁଠୁ
ପଣ୍ଟେ ଦେଖିବ ରୁହ ।।

( ଆହା ! ) ଶିଖିଥିଲି କେତେ ଡାଗ୍ଦେଇ କାଂଦ
ଅଂଖିରୁ ଗଡ଼ାଇ ଲୁହ !
ରହ ପୋଡ଼ାମୁହାଁ ! ନାଗର ପଣିଆ
ସହିବେ କେତେକେ ଧଅଁ ?
ମୁ ତ ଭ୍ରଥ ନାହାକ ଝିଅ ।।

ମୁଁ କି ଇମିତି ସିମିତି ଜଣେ
ମୁଁ ତ ଗୋଟିଏ କାହାଣେ, ପଣେ ।
ମୁଁ ତ ଚାଲି ଯାଉଥିଲେ          ପୃଥ୍ୱୀ ଦୁଲୁ ଦୁଲୁ
ଶିଆଳ ପଳାଏ ବଣେ ।।

ଖେଳ ବକଲରେ          ଦେଉଳ ତୋଟାରେ
ଗୃହିଦେଲ ବୋଲି          ଆଂବ ଦ'ଟା ଥରେ
ଆର ସାହିର ସେ          ପାଲୁଣୀ ବୁଢ଼ୀଟା
ହାଟ ବସାଇଛୁ ଏଣେ—

କହୁଛୁ କଣନା          ଆଟିକା ପେଟରେ
ପୋଡ଼ିଯିବ ଗୋଡ଼ ମାଣେ ।
ଅଇଁଠା ଖାଇର          ଥୋମଣିକୁ ଖଂଗି
ଦଅଂତ କହୁଣୀ କଣେ ।।

ମାଣବସା ଦନେ          ଗଲା ଗୁରୁବାର
ପଣସ ଗଛରେ          ଚଢ଼ି ମୁଁ ପଡର
ପାରିଦେଲ ବୋଲି          ଶୁକେଇ କହୁଚ
ଅଂଡବ ଚଂଡ ମୁଁ ଜଣେ !!

ମଲ ଲଜକୁଳ !          ଓଦା ବଢ଼ାଫାଲୀ
ନୂଉ ନୂଉ ଘର କଣେ !
ମୁଁ କି ଋ'ଟାକୁ କଥାରେ ଗଣେ ?
ମୁଁ କି ଇମିତି ସିମିତି ଜଣେ ?

ମୁଁ ତ ଭୁଅ ନାହାକ ଝୁଅ
ସାତ ଭାଇରେ ମୁଁ          ଗୋଟିଏ ଭଉଣୀ
ମତେ ଦେଖିନ କିଏ ମ କୁହ ?
ନକନକ ଦହ          ତନୁପ୍ରାତ୍ତେଲୀ ମୁଁ
କାଳିଆ ଟିକେ ବା ଧୁଅ ।।

ଇଆ ବୋଲି ମୋତେ                    ପାଲୁଣି ଖୁଣିବ
ଖାଲୁକୁଣି ପର ମୁହଁ !
ଝିଂଗି ଦେବ ତାର                    ଦନ୍ତା ଗ୍ରମୁଦାଂତ
ବେଲ ପଡ଼ୁ ଟିକେ ରୁହ ।
ମୁଁ ତ ଭୁଥ ନାହାକ ଝୁଅ ॥

ମୁଁ ତ ମାଛୁକ ନ କହେ ମର
ମୋତେ ଗ୍ରଛକ ମାଡ଼େ ଲୋ ଡର ।
ହଳଲ ପାଣିକ                    ବଢ଼ାଏ ନା ଗୋଡ଼
ମୁଁ ତ ସୂତାରୁ କାଢ଼େନା ଖିଅ ।
ମୁଁ ତ ଭୁଥ ନାହାକ ଝିଅ ॥*



* ଲେଟଂକର ଏକ ଅପ୍ରକାଶିତ ପଲ୍ଲି-କବିତା । ରଚନା କାଳ ୧୯୫୮ । ୧୯୪୬ରେ ପ୍ରଥମେ ପ୍ରକାଶିତ 'ପଲ୍ଲିଶ୍ରୀ' ପରେ ଏହାହିଁ ବୋଧହୁଏ ଲେଖକର ପ୍ରଥମ ପଲ୍ଲି କବିତା । ଏହା 'ଆସଂତା କାଲି'ରେ ପ୍ରକାଶ ପାଇଥିଲା ।

# ଗ୍ରାମ-ସଭା

ଗ୍ରାମରେ ଲଗିଚ ଗାଂଧିଗୋଳ ।
ଫଜବୁଢ଼େ ହବ ସଭା          କେତେ ନେତା, କର୍ମୀ ଯୁବା
ଆସିଛଂତି କଟକରୁ, ଲଗେ ଚହଲ ।
ଗାଂଧି ହେବେ ଆମ ରଜା          ମିଳିବ ସ୍ୱରାଜ୍ୟ ଛାଜା,
ଖଜଣା ଟିକସ ସବୁ ହୋଇବ ଗ୍ରୁଡ଼ ॥

ଗାଆଁରେ ବାନର-ସେନା          ଉଡ଼ାଇ ତ୍ରିରଂଗ ବାନା
ସଭା ହେବ, ସଭା ହେବ କରଂତି ରୋଳ ।
ଗାଂଧି ଯିବେ ଲୁଣ ମାର          ଫିରଂଗି ପିଲେହ୍ନ ପାଣି,
ଗ୍ରାମେ ଗ୍ରାମେ ଝଦଢ଼ିଆ ଦଲକୁ ଦଲ ॥

ଲୁଣେ ହେବ ସେତୁବଂଧ,          ଲୁଣେ ଲଂକା ପ୍ରତିବଂଧ,
ଲୁଣରେ ବଇରି ତୋପ, କମାଣ କଲ ।
ସବୁ ଯିବ ପାଣି ଫାଟି          ସ୍ୱାଧୀନ ହେବ ଏ ମାଟି
ଲଗିଲାରେ ଲଗିଲାରେ ଲୁଣ-ସମର !!

---

* ଗାଂଧିଜୀଂକ ଦାଂଡୀ ଯାତ୍ରାକୁ ଲକ୍ଷ୍ୟ କରାଯାଇଛି ।

ଆସ, ଆସ, ସଇନ ବଲ !
ଆସ ନାଗ୍ସ ଗୁଡ଼ ହ୍ୱାଂଡ ଡାକ ଦଏ ଦୂରୁ ଦାଂଡୀ *
ଆସ ଯୁବା, ଆସ ପିଲେ ଗୁଡ଼ ଇସ୍‌କୁଲ !
ଦଫାଦାର ଚଉକିଆ କେତେ ନାଲ-ପଗଡ଼ିଆ
ଛକ ବାଟ ଛେକ ସବୁ ଦେଖାଂତି ଛଳ ॥

ସଭାକୁ ଯିବାକୁ ମନା ହୋଇଅଛୁ ଷୋଳ ଅଣା,
ତାଂକ ସଂଗେ ଜୁଟିଛଂତି ଗାଆଁ ମାଷ୍ଟର ।
ବ୍ରାହ୍ମଣ ସାହ୍ୱର ନଂଦେ ହସି ଦେଇ ମଂଦେ ମଂଦେ
ନିଜର ପୁରୁଖା ପଣ କରି ବାହାର ॥

ଆକଟି କହୁଂତି ବାଣୀ 'ପାଣିରେ ଘର ତ ଜାଣି
କୁଂଭୀରର ସଂଗେ ବାବୁ କଳି ନ କର ।'
ହଠାତ୍ ଶୁଭିଲ୍ ଝରେ ଦୋପଟୀ ଗୃକଣି ଦୂରେ
ଫିଂଗିଦେଇଥିବା ଗୋପବାବୁ ହାଜର ॥

ଗୁଡ଼ି ପାଟ, ଖିରୋଦଶି ଖଦ୍ଦ ଆଂଠୁକୁ ଆବୋରି
ପିଂଧିଛଂତି, ଖାଲି ପାଦେ ଦେଶ ସଫର ।
ତାଂକ ସଂଗେ ରମାଦେଈ ସାକ୍ଷାତ ଲକ୍ଷ୍ମୀ କି ସେହୁ !
ମାଲତୀ ପ୍ରଖରତେଜା ଛଂତି ଆବର ॥

ପୁଲିଶ ହାକମ ମୁହଁ ଶୁଖିଗଲା, ଜୟ ଜୟ
ନାଦ ଶୁଣି ଦଫାଦାରେ ହେଲେ ଆତୁର ।
ଡରଛୁ ନଂଦ ଆପଣେ ଘରକୁ ମୁହାଂତି ଏଣେ
ପାଟିରେ ପକେଇ ଟିକେ ଚୂନପତର ॥*



*କବିତାଟି ୧୯୫୮ ସାଲରେ ରଚିତ ।

# ଭୂତଛାଡ଼

କଖଡ଼ି ଗାଆଁର ଛକଡ଼ି ସାହୁ
ରାତି ନ ପାହୁଁ,
ଯାଉଥିଲେ କାହିଁ ଖଣଟି ଧରି,
କଂଟିଆ ମାରି ॥

କାହିଁ ଅମୁଣିହା ତୋଟାର କଣେ
ବାଉଁଶ ବଣେ,
ଗୋଟେ କଳା ଛାଇ ପଡ଼ିଲା ମାଡ଼ି
ଦ'ହାତେ ଛାଡ଼ି ॥

ପଡ଼ି ଉଠି ଆଗେ ଦେଖଂତି ସେହି
ବାଉଁଶ ଡାଳଟା ପଡ଼ିଛି ନଇଁ ।
ଝାଲଟାଏ ଗଲା ଦେହରୁ ବହି
ମୁହେଁ ରାମ ରାମ ଯାଆଂତି କହି ।
ବାଆ ଅମିଳରୁ ବାହୁଂଗା ଛାଇ
ଯେଉଁଠାରେ ଥିଲା ରହିଲା ତହିଁ ।
(କିଂରୁ) ଛକଡ଼ିଂକ ପ୍ରାଣ ଯାଇ ନ-ଯାଇ !

କଟିଗଲା ଜାଣି ଗୋଟାଏ ଦଶା !
ଉଡ଼ି ଯାଇଥାଂତା ଆଜି ତ ହଂସା !
ଉପର ସାହିର ଡେଲି ଲଂଗସା'
(ଯିଏ) ମଲା ଖାଇ ବୈଟେ ଟାଂଗିଆ ପଶା,—

ହୋଇଯାଇ ଭୂତ, ବାରଡାଂଗୁଆ
କରେ ଗୁନିଆ
ବାଟୋଇ ଲୋକଂକୁ ଗଲା ଅଇଲା ।
ମା ଅଁ ଲେଇ ମୁଂଡ ରଖିଲା ॥

ଘରେ ଫେର ଡାକି ଗୁଣିଆ ଏକ
ଝଡ଼ାଇ ନେଲେ ସେ ଦହଟା ଯାକ ।
ଅରୂଠ ପାଣି ଓ ଝାଡ଼ୁ, ଖପରା
ପଶାରୁଣି ପତ୍ର, ଦୁବ ଅମଡ଼ା,
ଗୁଗୁଚିଆ ଧୂପ, ଅଂଗାର ପୋଡ଼ା
ହେଲା ସଂଗ୍ରହ ॥

ଧୂଷୁସ୍ତ୍ରି ଧୂଅ
ବୋଲି ହୋଇ ଦହେ ସେ ସାହୁପୁଅ
ଖାଇ କାଟପାଣି, ଝଡ଼େଇ ନେଲେ
(ମନେ ମନେ)
ମାଛ ମାର ଯିବା କାଇଲି ହେଲେ ।
ମା ମଂଗଳା !
ରଖି ଦେଲେ ଜୀବ, ଯାଇ ତ ଥିଲା !
ଯାଆଁଳା କୁକୁଡ଼ା ମନାସ କଲା !
ଛକଡ଼ିକି ଯାଇ ଭୂତ ଛାଡ଼ିଲା ॥

# ଗ୍ରାମ-ଶ୍ମଶାନ

ଗ୍ରାମ ଶେଷେ ଶମଶାନ      ଖୁଡ଼ ଖୁଡ଼ ହାଡ଼ମାନ
ବାଉଁଶ, ମାଠିଆ ପୁଣି ଅଂଗାରମାଳ,
ପାଉଁଶ ବିଭୂତି ବୋଳି      ଯୋଗୀ ସମ ଅଛୁ ପଡ଼ି
ହାତରେ ଧରିଛୁ ସେତ ଖପୁରି ଥାଳ ।
କୁଲ, ଶିକା, ଗୁଂଚୁଣି ଥୁଆ,
ଗହଳ କୋଚିଲା ବଣେ      ନଗ୍ନଟିଆ ନରକନେ
ରାତି ଅଧେ ଘନ ଘନ ଡାକେ ବିଲୁଆ ॥

ଦାଢ଼ କାଟି ଲୁଣୀ ନଈ      ସାପ ପରି ଯାଏ ବହି
କୂଳବଂଧେ ଧାଡ଼ି ଧାଡ଼ି ବସିଲ କୁଆ,
ଝୁଂପୁରି ଗଉଡ଼କସା      ଡାଳେ ପେଚା ବାଂଧେ ବସା
ସାହାଡ଼ା, ଅରଖ, କେଂଦୁ ହୋଇଚି ଠିଆ ।
ରାତି ହେଲେ ଶକୁନ-ପିଲା
ମଣିଷ ମାଉଁସ ଲାଗି      ଉଜାଗରେ ରହେ ଜାଗି
ନୂଆ ମୁରୁଦାର ଦେଖି ମାରଇ ଚିଲା ॥

ଦପ ଦପ ଜଳେ ଜୁଇ    ଧୂଆଁ ମୋଡ଼ି ମୋଡ଼ି ହୋଇ
ପାଚିଲା କୋଚିଲା ଶିରେ ବାଂଧଇ ଜଟା,
ଶିବା, ଶାଗୁଣାର ରବ    ଥରାଉଛି ପରା ଶବ
ସେ ଶବଦେ ପୂରଉଠେ ଝାଂଗରା ନଟା।
ଗୋଠହୁଳା ଗାଈର ଗଳେ
ବାଜ ଟିପା ଘନ ଘନ    ଅଚେତ ମଶାଣି ଘୁମ
ଉକାଡ଼ି ଦଅଇ ପୁଣି ସଂଜ ପହରେ ।।

ଅଶିଣ ଉଆଁସ ରାତି    ଗରଭଣା ସଂକରାଂତି
ନଶାଗଡେ ଟାଳିଯାଏ ତରଳ କାଳି,
ମିଟି ମିଟି ଆଖି ଫେଇ    ଶତ ତରା ଯାଏ ଗୁହିଁ
ମଶାଣିର ବୁକେ ଜାଳି କୋଟି ଦୀପାଳୀ ।
ବରଗଛ ଡଳରେ ବସି
ଦୁଇ ଗୋଡ଼ ଦେଇ ମେଲି    ଶିଶୁରେ ଏଂଡୁଡ଼ି ଜାଳି
ସେକୁଥାଏ ଚରୁଗୁଣୀ ବିକଟ ହସି ।।

ପୁଣି ନତ ଶନିବାରେ    ଗୁଡ଼ି କାଳିକାଳା ସ୍ୱରେ
ପିତାଶୁଣୀ ନଛପଠା ବାଲିରେ ଚରେ,
ହୁରୁ ଆଖୁ କଆଖିରେ    ଡେଂଡା ଶବଦ ସମୀରେ
ଭସିଆସେ, ନାଉରିଆ ଶିବ ସୁମରେ ।
କଳା କଳା ଗମ୍ଭୀର ଗୁଇ
ଅଂଧାରରେ ବେଣା ବନେ    ଭସିଯାଏ ଅକାରଣେ
ଡେଣା ଗୁଟି ମାଛ ଜଳେ ଯାଏ ଉଭାଇ !!

ଶୁକଳ ନଅମୀ ଜହ୍ନ    ଧୋଇଦିଏ ଶଣବନ
ଧାନକ୍ଷେତେ ଭାଡ଼ି ଜଗିଥାଏ ମୂଳିଆ,
ଡୋଟାରେ ମସାଲ ଦଶେ    ବାଣେଲୀ ଗହଣେ କେସେ ?
ଡାହାଣୀ ଆଲୁଅ ଭାବ ହୁଏ ଗୁଣିଆ ।
ବାହାର ତା ଗ୍ରାମ ଦେଉଳୁ
ମଶାଣିପଦାରେ ହକେ;    ଜଗୁଆଳ ଭୟେ ଭାକେ,
ଜାଉଳି ଅଟାଟି ଜାଳି ରଖେ ପହିଲୁ ।।

ଆର ସାଲେ ଏଇଠାରେ ଚମକ ଦ' ଜଣ ମଲେ
କି ହେବ କେଜାଣେ ମାଆ ବାଣେଲୀ ସାହା
ନଈରୁ ଅତଡ଼ା ଖସି ଚମକାଏ ଦଣଦଣି
କାଠ ଗୁଡ଼ ନାଉରୀ ଯେ ସମାଲେ ନାଆ ।
ମନେ ମନେ ଗୁଣେ ସେ ପଦ
ସବ ଡର, ସବୁ ଭୟ କାଟି ସେ କରବ ଜୟ
ସଂକଟ-ସାପକୁ ସେ ଯେ କାଟୁଆ ଗଦ ॥

ଛୋଟ ଗ୍ରାମଟିର ଶେଷେ ଶୋଇଛୁ ନୁଖୁରା ବେଶେ
ଧୂଳି ମଳି ବୋଲିହୋଇ ମଶାଣି-ପଦା,
ଗାଆଁ ଗୋଟାକର ଦେହ ଲଭି ତା ଆଦର ସ୍ନେହ
ଶେଷେ ହେବ ଏଇଠାରେ ପାଉଁଶ ଗଦା !
ଗ୍ରାମଟିର ସେ ପରିଣତ ॥
ଆଗ, ପଛ, ଆଜି, କାଲି ସବୁ ହେବ ଛାର ବାଲି
ମୁଁ ବାଢ଼ିଲି ତା ପଦରେ ମୋହର ନତ !!



Printed by Sri Jayaram Mahapatro, B. Com.
at Grantha Prakasini, Cuttack-1, 1964.